# କାମୋଡ଼ୋ ଦ୍ୱୀପର
# ଡ୍ରାଗନ

ଡ଼ଃ ପ୍ରମୋଦ କୁମାର ମହାପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

# କାମୋଡ଼ୋ ଦ୍ୱୀପର ଡ୍ରାଗନ


ଲେଖକ

ଡ଼ଃ ପ୍ରମୋଦ କୁମାର ମହାପାତ୍ର, M. Sc.

ସହ-ସମ୍ପାଦକ, ସମାଜ, କଟକ-୧






ପ୍ରକାଶକ

ଶ୍ରୀ ବିଜୟ ଶଙ୍କର ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦ ବିହାରୀ, କଟକ-୭୫୩ ୦୦୨

ନୂତନ ମୁଦ୍ରଣ : ୨୦୦୬

ଛାପାସଂଖ୍ୟା : ୫୦୦

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ

ଅକ୍ଷରସଜ୍ଜା

କଂପ୍ୟୁଟର ଟ୍ରିକ୍, କଟକ-୧୨

ମୁଦ୍ରଣ

ବୁଇଡ୍ ପ୍ରିଣ୍ଟର୍ସ, କଟକ-୨


**KAMODO DWIPARA DRAGAN**


by

**Dr. Promod Kumar Mohapatra**, M. Sc.

**"The Samaj"**, Cuttack



Published by

**Shree Bijoy Shankar Patra**

**ORISSA BOOK STORE**

Binode Behari, Cuttack-753 002

PRICE : **Rs.30/-**

ISBN 81-7400-489-0

New Edition : **2006**

ମୋର ଲେଖକ ଜୀବନର ମୁଖ୍ୟ ପ୍ରେରଣାଦାତା, ହିତୈଷୀ, ପରମ ପୂଜ୍ୟ ବାବୁଜୀ 'ସମାଜ' ସମ୍ପାଦକ **ଡକ୍ଟର ରାଧାନାଥ ରଥଙ୍କ** କରକମଳରେ ମୋର ଏହି ପ୍ରଥମ ବିଜ୍ଞାନ ଉପନ୍ୟାସ ପୁସ୍ତକଟି ଅର୍ପଣ କରି ତାଙ୍କଠାରୁ ଆଶୀର୍ବାଦ କାମନା କରୁଛି ।

— ଲେଖକ

# ପ୍ରାକ୍ ସୂଚନା

ଓଡ଼ିଆ ଭାଷାରେ ବିଜ୍ଞାନଭିତ୍ତିକ ଗଳ୍ପ ପୁସ୍ତକ ସଂଖ୍ୟା ଖୁବ୍ କମ୍ । ଚଳିତ ଶତାବ୍ଦୀକୁ ଆମେ ବିଜ୍ଞାନର ଅଭ୍ୟୁଦୟର ଶତାବ୍ଦୀ କହୁଥିବା ବେଳେ ଏବଂ ଅନ୍ୟ ବହୁ ଦେଶରେ ଏ ପ୍ରକାର ବିଜ୍ଞାନ ପୁସ୍ତକ ବହୁଳଭାବେ ପ୍ରସାରିତ ହୋଇ ବିଜ୍ଞାନ ବିଷୟରେ ସାଧାରଣ ଲୋକଙ୍କୁ ବହୁ ନୂତନ ଭାବଧାରା ଯୋଗାଇ ସେମାନଙ୍କ ମନୋରଞ୍ଜନ କରିପାରୁଥିବା ବେଳେ ଆମ ରାଜ୍ୟ ତଥା ଆମ ଦେଶରେ ଏ ଦିଗରେ ବିଶେଷ ଉଲ୍ଲେଖନୀୟ ଅଗ୍ରଗତି ନ ହେବା ଦୁଃଖଦାୟକ ।

ହଜାର ହଜାର ବର୍ଷ ତଳେ ଆମ ପୃଥିବୀର ଅବସ୍ଥା କିପରି ଥିଲା ଓ ସେତେବେଳେ 'ଡାଇନୋସର' ଭଳି ବିରାଟକାୟ ରାକ୍ଷସଜୀବ, 'ଡ୍ରାଗନ' ଇତ୍ୟାଦି ବାସ କରୁଥିଲେ, ସେ ବିଷୟରେ ଏହି ପୁସ୍ତକରେ ମୁଁ ସୂଚନା ଦେବାକୁ ଚେଷ୍ଟା କରିଛି । ଏହି ପୁସ୍ତକରେ ସନ୍ନିବେଶିତ ଅଧିକାଂଶ ତଥ୍ୟ କାଳ୍ପନିକ ହେଲେ ମଧ୍ୟ ଏହାର ଭିତ୍ତିଭୂମିରେ ଅନେକ ସତ୍ୟତା ରହିଛି । ଦ୍ୱୀପବହୁଳ ଫିଲିପାଇନସ୍ ଦେଶର କାମୋଡ଼ୋ ଦ୍ୱୀପ ବହୁ ଦିନରୁ ଏକ ଭୟଙ୍କର ବିପଦଶଙ୍କୁଳ ଦ୍ୱୀପରୂପେ ପରିଚିତ । ଏବେ ସୁଦ୍ଧା ଏଠାରେ ବିରାଟକାୟ ସରୀସୃପଙ୍କର ରାଜୁତି ଚାଲିଛି । ଏହି ଦ୍ୱୀପକୁ ମୁଖ୍ୟ କେନ୍ଦ୍ର ଭାବେ ଗ୍ରହଣ କରାଯାଇ ଏଠାରେ ରାକ୍ଷସଜୀବ ଓ ବିଜ୍ଞାନ, ସାହସୀ, ବିଚାରବୁଦ୍ଧି ସମ୍ପନ୍ନ ମଣିଷଙ୍କ ଭିତରେ ଏକ ସଂଘର୍ଷର କାଳ୍ପନିକ ଚିତ୍ର ଏହି ପୁସ୍ତକରେ ଉପସ୍ଥାପିତ ହୋଇଛି । ଏଥିରେ ମୁଁ କେତେଦୂର ସଫଳ ହୋଇଛି ତାହା ସହୃଦୟ ପାଠକମାନେ ବିଚାର କରିବେ ।

ମୋର ବହୁ ବିଜ୍ଞାନ ପୁସ୍ତକ ପଢ଼ିବା ପରେ ମୋର କେତେ ଜଣ ବନ୍ଧୁ ମୋତେ ଲୋକପ୍ରିୟ ବିଷୟବସ୍ତୁ ସମ୍ବଳିତ ଏକ ''ବିଜ୍ଞାନ ଫିକ୍‌ସନ'' ପୁସ୍ତକ ଲେଖିବାକୁ ବାରମ୍ବାର ଅନୁରୋଧ କରିଥିଲେ । ସେହିମାନଙ୍କର ଉତ୍ସାହ ଓ ପ୍ରେରଣାରୁ ଆଜିର ଏହି ପୁସ୍ତକର ଜନ୍ମ । ଏହି ଅବସରରେ ମୁଁ ସେହି ଅନ୍ତରଙ୍ଗ ବନ୍ଧୁମାନଙ୍କ ନିକଟରେ ମୋର କୃତଜ୍ଞତା ଜଣାଉଛି ।

ଓଡ଼ିଶା ବୁକ୍‌ଷ୍ଟୋର୍‌ର ପରିଚାଳକ ବନ୍ଧୁ ବିଜୟ ବାବୁଙ୍କ ପ୍ରେରଣା ଓ ସତ୍ତ୍ୱାଧିକାରୀ ଗୋବିନ୍ଦ ବାବୁଙ୍କ ଉତ୍ସାହ ଓ ସହଯୋଗ ଯୋଗୁଁ ଏତେ ଶୀଘ୍ର ଏହି ପୁସ୍ତକ ପ୍ରକାଶିତ ହୋଇପାରିଛି । ଗୁରୁପ୍ରସନ୍ନ ପ୍ରେସ୍‌ର ସତ୍ତ୍ୱାଧିକାରୀ ବନ୍ଧୁ ପ୍ରସନ୍ନ ବାବୁ ପୂର୍ବଭଳି ଏହି ପୁସ୍ତକର ମୁଦ୍ରଣ ଓ ପ୍ରୁଫ୍ ନିଜେ ଦେଖି ମୋତେ କୃତଜ୍ଞବଦ୍ଧ କରାଇଛନ୍ତି । ଏହି ଅବସରରେ ସମସ୍ତଙ୍କୁ ମୋର କୃତଜ୍ଞତା ଜଣାଉଛି । ମୋର ସ୍ତ୍ରୀ ଅନସୂୟା ନିଜେ ଜଣେ ବିଜ୍ଞାନ ଶିକ୍ଷୟିତ୍ରୀ ଥିବାରୁ ଲେଖାଲେଖି କରିବାବେଳେ ମୋତେ ସାହାଯ୍ୟ କରିଆସୁଛନ୍ତି । ଏହି ପୁସ୍ତକ ପାଇଁ ତାଙ୍କର ଅବଦାନ ମଧ୍ୟ କମ୍ ନୁହେଁ । ତେଣୁ ସେ ମଧ୍ୟ ଧନ୍ୟବାଦର ପାତ୍ରୀ ।

ଶେଷରେ ଯେଉଁମାନଙ୍କ ପାଇଁ ଏହି ପୁସ୍ତକ, ସେମାନେ ଏଥିରୁ କିଛି ଆମୋଦଦାୟକ ଅନୁଭୂତି ଲାଭ କଲେ ଶ୍ରମ ସାର୍ଥକ ହେବ ।

ରଜ ସଂକ୍ରାନ୍ତି

ପ୍ରମୋଦ କୁମାର ମହାପାତ୍ର



## — ଏଥିରେ ପଢ଼ନ୍ତୁ —

# ସାର୍କ ସାମ୍ରାଜ୍ୟରେ ଜୀବନ ସଂଘର୍ଷ

ଅନନ୍ତପ୍ରସାରୀ ଶାନ୍ତ ନୀଳ ଉତ୍‌ଫୁଲ୍ଲିତ ଜଳରାଶିରେ ଛୋଟ ବଡ଼ ଢେଉ ଲହରୀ ଭାଙ୍ଗୁଛି । ଆକାଶର ନୀଳିମିତା ସହିତ ସତେ ଯେପରି ଦୂର ଦିଗ୍‌ବଳୟରେ ସାଗର ମିଶିଯାଇ ଏକ ନୀଳ ବୃତ୍ତ ସୃଷ୍ଟି କରିଛି । ଉପରେ ନୀଳ, ଚତୁଃପାର୍ଶ୍ୱରେ ନୀଳ, ତଳେ ସମତଳ ନୀଳ ସାଗର ବେଳା । ସେତେବେଳଯାଏ ଚନ୍ଦ୍ର ଅସ୍ତ ହୋଇନାହିଁ । ସ୍ଥଳଭାଗରେ ପାହାନ୍ତାପହରର କୋଳାହଳ ଏଠାରେ ନାହିଁ । କୌଣସି ପ୍ରକାର ଶବ୍ଦ, ପକ୍ଷୀଙ୍କ କାକଳି ଶୁଣିବା ଏଠାରେ ସ୍ୱପ୍ନ । କେବଳ ଏହି ନୀଳ ସାମ୍ରାଜ୍ୟରେ ଯାହା ଅଛି ତାହା ହେଲା ଚନ୍ଦ୍ର, ସୂର୍ଯ୍ୟ ଆଉ ଅମାପ ଜଳରାଶି ।

ନିଜର ଓଦା ସରସର ଅବସ ଦେହର ମୁଦ୍ରିତ ଚକ୍ଷୁ ଖୋଲିବାକୁ ବହୁ ଚେଷ୍ଟାକଲେ ଡିସୋଜା । ତଥାପି ନିସ୍ତେଜ ଶରୀରରୁ କ୍ଳାନ୍ତି ଯାଇନାହିଁ । ସକାଳର କଅଁଳ ସୂର୍ଯ୍ୟାଲୋକ ତାଙ୍କ ଦେହର ସବୁ ଅଙ୍ଗକୁ ସେ ପର୍ଯ୍ୟନ୍ତ ସ୍ପର୍ଶ କରିନାହିଁ । ଅର୍ଦ୍ଧମୁଦ୍ରିତ ଆଖି ଖୋଲି ଡିସୋଜା ଯାହା ଦେଖିଲେ ସେଥିରେ ସେ ହଠାତ୍ ଚମକି ଉଠି ସଚେତ ହୋଇଗଲେ । ଜୀବନ ରକ୍ଷାକାରୀ ନୌକାର ଗୋଟିଏ ପାଖରେ ମୁଣ୍ଡକୁ ତଳକୁ କରି ଡଙ୍ଗା ଫନ୍ଦରେ ଓହଳି ରହିଛି ଏକ ସୁଶ୍ରୀ ମାନବ । ସେ ମାନବ ମୃତ ନା ଜୀବିତ ? ହଠାତ୍ ଉଠି ପଡ଼ିଲେ ଡିସୋଜା । ତାଙ୍କର ବିଶାଳ ବପୁବାନ ଶରୀରକୁ ସମ୍ଭାଳି ନପାରି କ୍ଷୁଦ୍ର ଜୀବନରକ୍ଷାକାରୀ ନୌକା ଦୋହଲି ଗଲା । ମାତ୍ର ସେହି ଲୋକର କୌଣସି ପରିବର୍ତ୍ତନ ନାହିଁ । ଧାଇଁଗଲେ ଡିସୋଜା । ସେତେବେଳ ଯାଏ ସେହି ଅଚିହ୍ନା ମାନବ ନୌକାର ଗୋଟିଏ ପଟର ଫନ୍ଦକୁ ଧରି ଅଟକି ରହିଥିଲା । ସାଗରର ନୀଳ ଜଳରାଶି ଭିତରେ ଦୁଇଟା ଜଳୁଥିବା ଆଲୋକ ଶିଖାକୁ ଦେଖି କ୍ଷଣକପାଇଁ ସ୍ତମ୍ଭୀଭୂତ ହୋଇଗଲେ ଡିସୋଜା । ସେ କିଛି ବୁଝିପାରିଲେ ନାହିଁ । ତାଙ୍କର ଓଦା ସରସର ଦେହରୁ ମଧ ଝାଳ ବୋହିବାକୁ ଆରମ୍ଭ କଲା । ମୁଣ୍ଡରେ ସ୍ୱେଦବିନ୍ଦୁ ଦେଖାଦେଲା । ସେ କ'ଣ ଆସି ଏକ ମାୟାପୁରୀରେ ପହଞ୍ଚିଲେ କି ? ଅମାପ ଜଳରାଶି ଭିତରେ

ଜଳୁଛି ଦୁଇଟି ବିରାଟକାୟ ଜ୍ୱଳନ୍ତ ଅଗ୍ନିକଣା । ପରମୁହୂର୍ତ୍ତରେ ସେ ନିଜେ ମଧ୍ୟ ଏହା ବିଶ୍ୱାସ କରିପାରିଲେ ନାହିଁ । ଏହା କ'ଣ ସତ୍ୟ । ଜ୍ୱଳନ୍ତ ଅଗ୍ନିଶିଖାଠାରୁ କିଛି ଦୂର ଯାଏ ଲମ୍ବି ରହିଛି ଏକ ବିରାଟ ଶରୀର । ଶରୀର ଶେଷ କେଉଁଠି ? ଏହା କ'ଣ ଜଳଦାନବ ? ଏପରି ବିରାଟକାୟ ଜଳଜୀବକୁ ପ୍ରଥମ ଥର ପାଇଁ ଦେଖିଲେ ଡିସୋଜା । ତାହା ଯେ ଏକ ବିରାଟକାୟ ସାର୍କ ଓ ଜ୍ୱଳନ୍ତ ଅଗ୍ନିପିଣ୍ଡୁଳା ତାର ରକ୍ତିମ ଚକ୍ଷୁ, ଏକଥା ହଠାତ୍ ତାଙ୍କ ମୁଣ୍ଡକୁ ଆସିଗଲା । ମଣିଷମାଂସ ପ୍ରିୟ ସାର୍କ ଏତେ ଲୋକଙ୍କୁ ଖାଇବା ପରେ ମଧ୍ୟ ତଥାପି ତାର ଶାନ୍ତି ନାହିଁ; ଏଠାକୁ ଧାଇଁ ଆସିଛି ତାଙ୍କର ଓ ତଳକୁ ସାଗର ଜଳକୁ ଓହଳି ରହିଥିବା ହତଭାଗ୍ୟ ମଣିଷକୁ ଭୋଜନ କରି ଶେଷ କରିବା ପାଇଁ । ସାର୍କର ବିରାଟକାୟ ବପୁ ଓ ନିଆଁପରି ଜ୍ୱଳନ୍ତ ଚକ୍ଷୁ ଦେଖି ଡିସୋଜାଙ୍କ ଲୋମମୂଳ ଟାଙ୍କୁରି ଉଠିଲା । ସେ କିଛି ଚିନ୍ତା କରିବା ପୂର୍ବରୁ ହଠାତ୍ ଧାଇଁଯାଇ ସମୁଦ୍ର ଭିତରକୁ ଅଧା ଓହଳି ରହିଥିବା ସେହି ହତଭାଗ୍ୟ ବ୍ୟକ୍ତିଟିକୁ ବୋଟ ଉପରକୁ ଆଣିଲେ । ମାତ୍ର ଏ କ'ଣ ? ସେହି ବଳିଷ୍ଠ ବ୍ୟକ୍ତିର ଗୋଟିଏ ପାଦ ସେତେବେଳକୁ ସାର୍କର ଭୋଜନର ବସ୍ତୁ ହୋଇ ସାରିଥିଲା । ଗୋଟିଏ ପଟ ପାଦରୁ ହାଡ଼ ଦେଖାଯାଉଥିଲା ଓ ରକ୍ତ ଧାରଧାର ହୋଇ ତଳକୁ ଝରି ପଡୁଥିଲା । ଡିସୋଜା ଲକ୍ଷ୍ୟ କଲେ ଯେ ତଳକୁ ବୋହିପଡୁଥିବା ରକ୍ତବିନ୍ଦୁକୁ ବହୁ ସାର୍କ ଶିଶୁ ବୋଟ କଡ଼ରେ ଟାକିରହି ଆନନ୍ଦରେ ପାନ କରୁଥିଲେ । ତେବେ ବୋଟଠାରୁ ଟିକିଏ ଦୂରରେ ଥିବା ବିଶାଳକାୟ ସାର୍କ ଏମାନଙ୍କର ମା' । ଏହି ଶିଶୁ ସାର୍କମାନେ ହିଁ ସେହି ବ୍ୟକ୍ତିର ଗୋଡ଼ର ମାଂସକୁ ଟାଣି ଖାଇଯାଇଥିଲେ ।

ଡିସୋଜା ଭଗବାନଙ୍କୁ ଧନ୍ୟବାଦ ଦେଲେ । ଯଦି ସେହି ବିଶାଳ ସାର୍କ ଥରେ ଏହି ଲୋକଆଡ଼କୁ ଲକ୍ଷ୍ୟ କରିଥାନ୍ତା, ତେବେ ହୁଏତ କେତେବେଳୁ ଏହି ହତଭାଗ୍ୟ ତାର ପାକସ୍ଥଳୀ ଭିତରେ ରହି ସାରିଥାନ୍ତା । ସେତେବେଳଯାଏ ସେହି ବଳିଷ୍ଠ ଯୁବକ ନିସ୍ତେଜ ଭାବରେ ବୋଟ ଉପରେ ପଡ଼ିରହିଥିଲା । ହାତ ଦୁଇଟି ବୋଟର ଗୋଟିଏ ଧାରକୁ ଲାଗିରହି ଯାବ ପଡ଼ିଯାଇଥିଲା । ଡିସୋଜାଙ୍କ ପରି ଜଣେ ସାହସୀ ସାମରିକ ଅଫିସରଙ୍କ ହୃଦୟ ଏହି ସୁନ୍ଦର ଯୁବକର ଅବସ୍ଥା ଦେଖି ଦୁର୍ବଳ ହୋଇଯାଇଥିଲା । ଜୀବନ ବଞ୍ଚାଇବାକୁ ଏହି ଯୁବକ କେତେ ଚେଷ୍ଟା

ନକରିଛନ୍ତି ସତେ ? ମାତ୍ର ଭଗବାନଙ୍କର ଅଶେଷ କରୁଣାରୁ ସେ ସାର୍କ ମୁହଁରୁ ହିଁ ବଞ୍ଚିଯାଇଛି- ଏହାଠାରୁ ବଳି ଖୁସିର ବିଷୟ କ'ଣ ଅଛି !

ମାତ୍ର ଯେତେବେଳେ ବିପଦ ଆସେ ତାର ପରିସମାପ୍ତି ଏତେ ଶୀଘ୍ର ଘଟେ ନାହିଁ । ସେମାନଙ୍କୁ ଅତୀତ ଘଟଣା ଚିନ୍ତାକରିବା ପୂର୍ବରୁ ବର୍ତ୍ତମାନ ଏହି ରାକ୍ଷସ ସାର୍କ ମୁହଁରୁ ହିଁ ପ୍ରଥମେ ବଞ୍ଚିବାକୁ ପଡ଼ିବ । ଥରେ ମଣିଷ ମାଂସର ସ୍ୱାଦ ଚାଖିଥିବା ସାର୍କ ମୁହଁରୁ ସେମାନେ ବା ବର୍ତ୍ତିବେ କିପରି ? ଚାରିଆଡ଼େ ସାର୍କର ସାମ୍ରାଜ୍ୟ । ତାଙ୍କୁ ଘେରି ରହିଛନ୍ତି ସାର୍କର ସେନାବାହିନୀ ଆଉ ସାର୍କର ସାମ୍ରାଜ୍ୟ ନୀଳସାଗର ନିଜେ ହିଁ ମଣିଷର ଶତ୍ରୁ, ପାଖରେ ସ୍ଥଳଭାଗର ସୂଚନା ନାହିଁ । ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଜଣେ ଅବସ ଦୁର୍ବଳ ପ୍ରୌଢ଼ ଡିସୋଜା ଓ ଜଣେ କ୍ଷତବିକ୍ଷତ ଚେତାଶୂନ୍ୟ ଯୁବକ କଣ ସାର୍କ ସମ୍ରାଟଙ୍କୁ ସାମନା କରିପାରିବେ ? ଡିସୋଜା ହାତ ଯୋଡ଼ି ଭଗବାନଙ୍କୁ ପ୍ରାର୍ଥନା କଲେ । "ହେ ଭଗବାନ ! ଯଦି ତୁମେ ଆମକୁ ମାରିବାର ଥିଲା ତେବେ ଗତରାତ୍ରିର ବିଭୀଷିକାରେ ମାରି ନଦେଇ ଆଜିଯାଏ ବଞ୍ଚାଇ ରଖିଲ କାହିଁକି ? ମୁଁ ଏହି ଅଚେତ ଯୁବକ ସହିତ ନିଜକୁ କଣ ରକ୍ଷା କରିପାରିବି ?" ସେତେବେଳଯାଏ ଶିଶୁ ସାର୍କଙ୍କ ଲୀଳାଖେଳା ବୋଟ କଡ଼ରେ ଚାଲିଥିଲା । ସେମାନଙ୍କ ଆନନ୍ଦମତ୍ତ ସନ୍ତରଣ ଅଭ୍ୟାସ ଭିତରେ ସମୟ ସମୟରେ ଆଞ୍ଜୁଳା ଆଞ୍ଜୁଳା ପାଣି ଆସି ବୋଟ ଉପରେ ପଡୁଥିଲା ତ କେତେବେଳେ ପୁଣି ସେମାନଙ୍କ ଦେହ ସ୍ପର୍ଶରେ କ୍ଷୁଦ୍ର ଜୀବନ ରକ୍ଷାକାରୀ ବୋଟଟି ଟଳମଟଳ ହୋଇଯାଉଥିଲା । ସେତେବେଳଯାଏ ସେହି ଅଗ୍ନିବର୍ଷୀ ଜ୍ୱଳନ୍ତ ରକ୍ତିମ ଅଗ୍ନିଶିଖା ସାଗରର ନୀଳ ଜଳରେ କିଛି ଦୂରରେ ଦେଖାଯାଉଥିଲା ।

ହଠାତ୍ ଡିସୋଜାଙ୍କ ମୁଣ୍ଡକୁ ଏକ ବୁଦ୍ଧି ଆସିଲା । ସେ ନିଜେ ବୋଟର ନିମ୍ନ ଅଂଶକୁ ଗଡ଼ିପଡ଼ିଲେ ଓ ସେହି ଅଚେତ ଯୁବକଟିକୁ ତଳକୁ ଟାଣିଆଣି ଲୁଚି ରହିଲେ । ସାର୍କର ଚକ୍ଷୁରୁ ନିଜକୁ ଲୁଚାଇ ରଖିବା ହେଉଛି ଏହା କରିବାର ଉଦ୍ଦେଶ୍ୟ । ଏହାଦ୍ୱାରା ହୁଏତ ସାର୍କ ସେମାନଙ୍କର ଅନୁପସ୍ଥିତି ଉପଲବ୍ଧି କରି ଅନ୍ୟଆଡ଼କୁ ଚାଲିଯିବ । ଏହା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଥରେ ଯଦି ସନ୍ତରଣକାରୀ ସାର୍କ ତାର ମୁଣ୍ଡ ବା ଲାଞ୍ଜ ତାଙ୍କର କ୍ଷୁଦ୍ର ବୋଟରେ ପିଟିଦେବ

ତେବେ ତାହା ଅନାୟାସରେ ଖଣ୍ଡ ଖଣ୍ଡ ହୋଇଯିବ, ଆଉ ସେହି ବିରାଟକାୟ ସାର୍କ ! ସେ ଯଦି ଚାହେଁ ତେବେ ହୁଏତ ବୋଟ ସହିତ ସେମାନଙ୍କୁ ସୁବିଧାରେ ଗିଳିଦେଇ ପାରିବ । ତାର ଶରୀରର ଶେଷ କେଉଁଠି ତାହା ଡିସୋଜା କଳ୍ପନା କରିବାକୁ ଚେଷ୍ଟା କରୁଥିଲେ । ଡିସୋଜା ନିଜକୁ ଧନ୍ୟ ମନେ କରୁଥିଲେ ଓ ଭଗବାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଥିଲେ । ସେହି ବିରାଟକାୟ ସାର୍କ କ'ଣ ତାଙ୍କୁ ସେତେବେଳଯାଏ ଦେଖିନାହିଁ ? ନାଁ ଦେଖିବା ପରେ ବି ଆହାର ନକରି ଛାଡ଼ିଦେଲା । ବୋଧହୁଏ ଗତ ରାତ୍ରିର ଭୁରି ଭୋଜନ ପରେ ତାର ପେଟପାଇଁ ତାଙ୍କପରି ଜଣେ କ୍ଷୁଦ୍ରକାୟ ମଣିଷର ମାଂସ ଆଉ ଦରକାର ନଥିଲା । ଡିସୋଜା ଦୀର୍ଘଶ୍ୱାସ ପକାଇଲେ ଓ ଭଗବାନଙ୍କ ଉପରେ ବିଶ୍ୱାସ ରଖି ନିଜର ଅବଶ ଶରୀରକୁ ବୋଟ ତଳଭାଗରେ ଗଡ଼ାଇ ଦେଲେ । ତାଙ୍କ ଶରୀରରୁ କିନ୍ତୁ ଅନବରତ ଝାଳ ବୋହି ଚାଲିଥିଲା । ଶୀତଳ ସକାଳର ଥଣ୍ଡାପବନ ତାଙ୍କ ପାଇଁ ଅଗ୍ନେୟଗିରିରୁ ବୋହୁଥିବା ପ୍ରଖର ଗ୍ରୀଷ୍ମ ପ୍ରବାହ ପରି ଥିଲା । ମାତ୍ର ସେହି ହତଭାଗ୍ୟ ଯୁବକ ସେ ପର୍ଯ୍ୟନ୍ତ ଚେତାଶୂନ୍ୟ ଥିଲା ଏବଂ ଏପ୍ରକାର ଜୀବନ ବଞ୍ଚାଇବାର କଠୋର ସଂଗ୍ରାମରୁ ମୁକ୍ତ ରହିଥିଲା ।

ସେତେବେଳଯାଏ ନରରକ୍ତଲୋଲୁପ ସାର୍କ ଶାବକଙ୍କ ଚଳପ୍ରଚଳ ଯୋଗୁ ବୋଟ ହଲୁଥିଲା ଓ ଆଞ୍ଜୁଳା ଆଞ୍ଜୁଳା ପାଣି ଆସି ବୋଟ ଭିତରେ ପଡୁଥିଲା । ଡିସୋଜାଙ୍କ ଅବଶ ଦେହ ବୋଟର ନିମ୍ନ ଭାଗରେ ପଡ଼ିରହି ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିଥିଲା । ଗତ ରାତ୍ରିସାରା ଜଳରେ ପଡ଼ିରହି ଅବଶ ହୋଇ ଆସିଥିବା ଡିସୋଜାଙ୍କ ଆଖି ବୁଜି ହୋଇଆସୁଥିଲା । ଜୀବନ ବଞ୍ଚାଇବାକୁ ଅନବରତ ଚେଷ୍ଟା କରି ଗତକାଲି ରାତ୍ରିରୁ ଅନବରତ ୨୦ ଘଣ୍ଟା କାଳ ସଂଗ୍ରାମ କରି ଆସିଥିବା ଡିସୋଜାଙ୍କ ଅବଶ ଚକ୍ଷୁ କେତେବେଳେ ମୁଦ୍ରିତ ହୋଇଯାଇଥିଲା ତାହା ସେ ଜାଣିପାରିନଥିଲେ ।



# ବିଭୀଷିକାମୟ କାଳରାତ୍ରି

କ୍ଷୀଣ କଣ୍ଠସ୍ୱର ଶୁଣି ହଠାତ୍ ଡିସୋଜାଙ୍କ ନିଦ ଭାଙ୍ଗିଗଲା । ରବର ଲାଇଫ ବୋଟର ନିମ୍ନଭାଗରେ ପଡ଼ିରହିଥିବା ତାଙ୍କର ନିସ୍ତେଜ ଘର୍ମାକ୍ତ ଶରୀରକୁ ଚାହିଁବା ପୂର୍ବରୁ ସେ ନିଜେ କେଉଁଠି ଜାଣିବାକୁ ଚେଷ୍ଟା କରୁଥିଲେ । ହଠାତ୍ ନିକଟରୁ କ୍ଷୀଣ ଶବ୍ଦଶୁଣି ସେ ଚେତା ପାଇବାପରି ଉଠି ବସିଲେ । ଚେତାଶୂନ୍ୟ ଯୁବକ ସେତେବେଳେ ସଚେତନ ହୋଇ କ୍ଷୀଣ କଣ୍ଠରେ ଚିତ୍କାର କରୁଥିଲା । ଡିସୋଜା ଆସ୍ତେ ଉଠି ବୋଟ ଚାରି ପାଖକୁ ନିଜର ଉତ୍କଣ୍ଠିତ ଆଖି ବୁଲାଇ ଆଣିଲେ । ରକ୍ତପିପାସୁ ସାର୍କର ଭୟଙ୍କର ଚକ୍ଷୁ ସେତେବେଳଯାଏ ତାଙ୍କ ମାନସପଟରେ ଉଜ୍ଜୀବିତ ଥିଲା । ମାତ୍ର ସେତେବେଳକୁ ତାଙ୍କର ବୋଟ ନୀଳସାଗର ବକ୍ଷରେ ଦିଗହୀନଭାବେ ବହୁ ଦୂର ଭାସି ଚାଲିଥିଲା । ସାର୍କ ଶାବକ ଓ ବିରାଟକାୟ ରାକ୍ଷସ ସାର୍କ କବଳରୁ ଜୀବନ ବଞ୍ଚାଇ ପାରିଥିବାରୁ ସେ ଭଗବାନଙ୍କୁ କୃତଜ୍ଞତା ଜଣାଇଥିଲେ ଆଉ ଧୀର ପାଦରେ ସେହି ଯୁବକ ଆଡ଼କୁ ଯାଇଥିଲେ । ଯୁବକଟି ସେତେବେଳଯାଏ ଚିତ୍କାର କରୁଥିଲା । ସମୁଦ୍ର ଜଳରେ କୋଡ଼ିଏ ଘଣ୍ଟା ବୁଡ଼ି ରହିଥିବା ଓଦା ସରସର ଅବଶ ଦେହଠାରୁ ସାର୍କ ଖାଇଯାଇଥିବା ରକ୍ତାକ୍ତ ଗୋଡ଼ ତାକୁ ବିଶେଷ କଷ୍ଟ ଦେଉଥିଲା । ସେ ଚାରିଆଡ଼କୁ ଆଖି ବୁଲାଇ ତାର ସ୍ତ୍ରୀ ଓ ଛୋଟ ପୁଅଙ୍କୁ ଖୋଜୁଥିଲା । ମାତ୍ର ସେମାନଙ୍କର ଅବସ୍ଥା କାହାକୁ ଜଣା ନଥିଲା । ହୁଏତ ନୀଳ ସାଗର ବକ୍ଷରେ ସେମାନେ କେତେବେଳୁ ଲୀନ୍ ହୋଇଯାଇ ସାର୍କ ମାନଙ୍କର ଖାଦ୍ୟ ହୋଇ ଯାଇଥିବେ । ଡିସୋଜା କେବଳ ଦୀର୍ଘ ନିଶ୍ୱାସ ପକାଇ ସେହି ଯୁବକକୁ ସାନ୍ତ୍ୱନା ଦେବା ବ୍ୟତୀତ ଆଉ କିଛି ତାଙ୍କ ନିକଟରେ କରିବାର ନଥିଲା । ଅତୀତର ସ୍ମୃତି କେବଳ ତାଙ୍କର ମାନସପଟକୁ ଚାଲିଆସି ସେହି ଭୟଙ୍କର କାଳରାତ୍ରିର ତାଣ୍ଡବଲୀଳାକୁ ସ୍ମରଣ କରାଇ ଦେଉଥିଲା ।

ସେଦିନ ଥିଲା ଡିସେମ୍ବର ମାସ ୨୧ ତାରିଖ । ସୂର୍ଯ୍ୟ କୁହୁଡ଼ି ଘେରା ଶୀତ ସକାଳର ବୁକୁଚିରି ପ୍ରଶାନ୍ତ ମହାସାଗରର ନୀଳ ଜଳରାଶି ଉପରେ ନିଜର

ସୁନେଲି ରଶ୍ମି ଖେଳାଇ ଦେଇଥିଲେ । ଆଗରେ ଖ୍ରୀଷ୍ଟ ମାସ । ଖ୍ରୀଷ୍ଟ ମାସ ପାଳନ କରିବାକୁ ଆନନ୍ଦ ବିଭୋର, ଉଦ୍‌ବିଗ୍ନ, ବ୍ୟଗ୍ର ନରନାରୀ ସେଦିନ ଫିଲିପାଇନସ୍ ଦ୍ୱୀପ ଅଭିମୁଖେ ଛୁଟି କଟାଇବାକୁ ଆସିବାକୁ ପୂର୍ବାହ୍ନରେ 'ଡୋନାପାକ୍' ନାମକ ବିରାଟ ଜାହାଜରେ ଚଢ଼ିଥିଲେ । ଖ୍ରୀଷ୍ଟମାସ ପାଳନ କରି ଛୁଟି କଟାଇବା ଓ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କ ସହ ମିଶିବାକୁ ଶହ ଶହ ବୁଢ଼ାବୁଢ଼ୀ, ଯୁବକ ଯୁବତୀ, ଛୋଟ ପିଲା ସମସ୍ତେ ଆନନ୍ଦରେ ବିଭୋର ଥିଲେ । ବିରାଟକାୟ ଜାହାଜସାରା ଆନନ୍ଦ ଉଲ୍ଲାସ ଲାଗିରହିଥିଲା । ଜାହାଜ କୂଳଛାଡ଼ି ଯାତ୍ରାରମ୍ଭ କଲା । ମାତ୍ର ଏହି ଆନନ୍ଦମତ୍ତ ନର-ନାରୀଙ୍କୁ ଯେ କାଳ କ୍ରମେ ନିଜ କୋଳକୁ ଟାଣି ନେଉଛି ସେ କଥା କ'ଣ କିଏ କଳ୍ପନା କରିଥିଲା । ଦିନସାରା ଆନନ୍ଦମତ୍ତ ନରନାରୀ ଜାହାଜ ଉପରେ କଟାଇଥିଲେ । କ୍ରମେ ସୂର୍ଯ୍ୟଦେବତା ପଶ୍ଚିମାଭିମୁଖୀ ହେଲେ ଓ ଆକାଶରେ ରକ୍ତିମଆଭା ବିଛାଇ ବିଦାୟ ନେଲେ । ଯାତ୍ରୀମାନଙ୍କ ଭିତରୁ କେତେକ ଡେକ ଉପରକୁ ଆସି ଆନନ୍ଦ ଉଲ୍ଲାସ ମଧ୍ୟରେ ନାଚୁଥିଲେ । ପୁଣି କେତେକ ଦୂର ଦିଗ୍‌ବଳୟ ଆଡ଼କୁ ଚାହିଁ ନୀଳଆକାଶର ବ୍ୟାପକତାକୁ କଳନା କରୁଥିଲେ, କେତେକ ସିନେମା ଦେଖୁଥିଲେ । ଜାହାଜ ସାରା କୋଳାହଳ ଲାଗି ରହିଥିଲା । ସମୁଦ୍ର ବକ୍ଷ ସମ୍ପୂର୍ଣ୍ଣ ଶାନ୍ତ ରହିଥିଲା ।

ରାତ୍ରି ୧୦ଟା ବାଜିବାର ସଙ୍କେତ ଜାହାଜରୁ ମିଳିଲା । ଏଥି ସହିତ ହଠାତ୍ ଏ କ'ଣ ହେଲା ! ଏକ ପ୍ରଚଣ୍ଡ ଶବ୍ଦ କରି ଜାହାଜଟି ଦୋହଲି ଉଠିଲା ଏବଂ କିଛି ଚିନ୍ତାକରିବା ପୂର୍ବରୁ ବିରାଟ ବିସ୍ଫୋରଣ ଘଟି ଚାରିଆଡ଼େ ଅଗ୍ନିବର୍ଷା ସହିତ ସମଗ୍ର ଜାହାଜଟି ଜଳିବାକୁ ଲାଗିଲା ଓ କ୍ରମେ କ୍ରମେ ସମୁଦ୍ର ବକ୍ଷକୁ ଗତିକଲା । ପୂର୍ବ କେତେ ମିନିଟର ସୁନେଲି ସ୍ୱପ୍ନ ଉଭେଇ ଯାଇ କ୍ରନ୍ଦନ, ଆର୍ତ୍ତଚିତ୍କାର ଓ ଜୀବନ ରକ୍ଷା ପାଇଁ ଆକୁଳ ପ୍ରାର୍ଥନାରେ ସେ ଅଞ୍ଚଳ ପୂରି ଉଠିଲା । ମାତ୍ର ନୀଳ ସାଗର ବକ୍ଷରେ ମଧ୍ୟ ଜାହାଜରୁ ବାହାରୁଥିବା ତୈଳ ଦ୍ୱାରା ସୃଷ୍ଟ ଅଗ୍ନି ପିଣ୍ଡୁଳା ହୁତ ହୁତ ହୋଇ ଜଳୁଥିଲା ଓ ଖୁବ୍‌ଶୀଘ୍ର ଚିତ୍କାର କରୁଥିବା ନରନାରୀଙ୍କୁ ନିଜ ବକ୍ଷକୁ ଟାଣି ନେଉଥିଲା ।

କେତେ ଯାତ୍ରୀ ଅଧା ପୋଡ଼ା ହୋଇ ଜୀବନ ବଞ୍ଚାଇବାକୁ ସମୁଦ୍ର ବକ୍ଷକୁ ଡେଇଁ ପଡ଼ିଥିଲେ ମାତ୍ର ସାଗର ବକ୍ଷରେ ମଧ୍ୟ ରକ୍ଷା ନାହିଁ । ଏହି ଯାତ୍ରୀବାହୀ

ଜାହାଜ ଦେହରେ ପିଚିହୋଇ ଏହି ବିଭୀଷିକା ସୃଷ୍ଟି କରିଥିବା ଟ୍ୟାଙ୍କର ଜାହାଜରୁ ହଜାର ହଜାର ବ୍ୟାରେଲ ତେଲ ସେତେବେଳେ ସମୁଦ୍ର ଜଳରେ ଭାସି ପାଣି ଉପରେ ଜଳୁଥିଲା । ଯିଏ ସାଗର ବକ୍ଷକୁ ଡେଇଁପଡ଼ି ପହଁରିବାକୁ ଚେଷ୍ଟାକଲା ତାକୁ ସତେ ଯେପରି ନିଆଁ ଗୋଡ଼ାଇ ଗୋଡ଼ାଇ ଧରି ନିଜ ବକ୍ଷକୁ ନେଇ ଯାଉଥିଲା । ଆକାଶବ୍ୟାପୀ ପ୍ରଚଣ୍ଡ ଅଗ୍ନିଶିଖା ସହିତ ଦୁଇଟି ଜାହାଜ ସମୁଦ୍ର ବକ୍ଷରେ ସେଦିନ ଅତି ଅସହାୟ ଭାବେ ଜଳି ନିଃଶେଷ ହୋଇଯାଇଥିଲେ ।

ଟ୍ୟାଙ୍କର କଡ଼କୁ ଗୋଟିଏ ପାଖରେ ହଠାତ୍ ଅଗ୍ନି ସଂଯୋଗ ହୋଇ ନଥିଲା । ଡିସୋଜା ପ୍ରଚଣ୍ଡ ଶବ୍ଦ ଶୁଣି ସାଗର ବକ୍ଷକୁ ଡେଇଁ ପଡ଼ିଥିଲେ ଓ କିଛି ଦୂରରେ ଏକ ଜୀବନରକ୍ଷାକାରୀ ନୌକାର ସହସ୍ରାଧିକ ଲୋକ ଆକୁଳ ଚିତ୍କାର କରି ଆଗେଇଯାଇ ଥିବାର ଦେଖିଥିଲେ । ମାତ୍ର ଏହି କ୍ଷୁଦ୍ର ନୌକା ଆରୋହଣ କରିବାଁକୁ ସେ ଆପ୍ରାଣ ଚେଷ୍ଟା କରି ମଧ୍ୟ ସଫଳ ହୋଇପାରି ନଥିଲେ । ସେ ଜୀବନର ଆଶା ଛାଡ଼ି ଦୂରକୁ ପହଁରି ଚାଲିଥିଲେ । ଆର୍ତ୍ତଚିତ୍କାର ଓ ତାଙ୍କ ନିକଟରେ ବୁଡ଼ିଯାଉଥିବା ସ୍ତ୍ରୀ, ବାଳକ-ବାଳିକା, ବୃଦ୍ଧ-ବୃଦ୍ଧାଙ୍କର ଜୀବନ ବଞ୍ଚାଇବାକୁ ଶେଷ ଚେଷ୍ଟା କରିବାକୁ ତାଙ୍କ ନିକଟରେ ସମୟ ନଥିଲା । ମାତ୍ର ବହୁଦୂର ଗଲାପରେ ଏକ ମାନବ ଶୂନ୍ୟ ଜୀବନତରୀ ଅଧା ଜଳପୂର୍ଣ୍ଣ ହୋଇ ଭାସୁଥିବାର ସେ ଦେଖିଥିଲେ । ବୋଧହୁଏ ଅତ୍ୟଧିକ ଆରୋହୀଙ୍କୁ ସେ ସମ୍ଭାଳିବାକୁ ସକ୍ଷମ ନ ହେବାରୁ ସମସ୍ତେ ସମୁଦ୍ର ଗର୍ଭରେ ପ୍ରାଣ ବିସର୍ଜନ କରିଛନ୍ତି ଏବଂ ଏହା ଓଲଟି ପଡ଼ି ଭାସି ଭାସି ଯାଉଛି ବୋଲି ସେ ଚିନ୍ତା କରିଥିଲେ ।

ବହୁ ସମୟ ସନ୍ତରଣ କରି ତାଙ୍କର ଶରୀର ଅବଶ ହୋଇ ଯାଇଥିଲା । ହାତ ଗୋଡ଼ ଶୀଥିଳ ହୋଇ ଆସୁଥିଲା । ଦୂରରେ ଭୀଷଣ ଭାବେ ଜଳୁଥିବା ଜାହାଜ ଦୁଇଟିକୁ ସେ ଦେଖି ପାରୁଥିଲେ । ସମଗ୍ର ସାଗର ସେଦିନ ନୀଳ ନ ହୋଇ ଲୋହିତ ହୋଇ ଯାଇଥିଲା । ପ୍ରାଣ ବଞ୍ଚାଇବାକୁ ଡିସୋଜା ସେଦିନ ଏହି ନୌକା ଉପରକୁ ଉଠି ଯାଇ ଥିଲେ । ମାତ୍ର ଏଥିରୁ ଜଳ ନିଷ୍କାସନ ନ କଲେ ପ୍ରାଣ ବଞ୍ଚାଇବା ଯେ ସମ୍ଭବ ନୁହେଁ ଏହା ତାଙ୍କୁ ଜଳ ଜଳ ହୋଇ ଦିଶୁଥିଲା । ମାତ୍ର ପାଖରେ କୌଣସି ପାତ୍ର ନାହିଁ । ଶରୀର, ବାହୁ ଅବଶ । ଅଣେଇ ହୋଇ ଜଳପୂର୍ଣ୍ଣ ଥିବା ବୋଟଟିରୁ ହାତ ଆଞ୍ଜୁଳାରେ ପାଣି ବୋହିଲେ ଡିସୋଜା ।

ତାଙ୍କର ଶେଷ ଶକ୍ତି ଥିବା ଯାଏ ସେ ଜଳ ନିଷ୍କାସନ କଲେ । ନିକଟରେ ପହଁରୁଥିବା ଅନ୍ୟ କେତେଜଣ ସାହସୀ ଯୁବକଙ୍କୁ ସେ ଦେଖୁଥିଲେ ମାତ୍ର ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଏହି ସାଗରରେ ଥିବା ନର ରକ୍ତପିପାସୁ ହାଙ୍ଗର ମାଛ ଓ ସାର୍କ ଧରିନେଇ ଖଣ୍ଡ ଖଣ୍ଡ କରି କାଟି ଦେଇ ନିଜର ଖାଦ୍ୟ ବନାଇ ଦେଉଥିବାର କରୁଣ ଚିତ୍ର ତାଙ୍କ ଆଖି ଆଗରେ ପଡୁଥିଲା । ସେହି କାଳ ରାତ୍ରିର ବିଭତ୍ସ ଦୃଶ୍ୟ ଦେଖିବାକୁ ଆଉ ଡିସୋଜାଙ୍କ ଶରୀରରେ ଶକ୍ତି ନଥିଲା । ତାଙ୍କର ଅବଶ ଶରୀର ନିସ୍ତେଜ ହୋଇ ଆସୁଥିଲା । ବୋଟରୁ ଜଳ ନିଷ୍କାସନ କରିବା ମଧ୍ୟରେ କେତେବେଳେ ସେ ନିଜ ଅଜାଣତରେ ବୋଟ ଉପରେ ଢଳି ପଡ଼ିଥିଲେ ତାହା ସେ ନିଜେ ବି ଜାଣି ନଥିଲେ । ତା ପରଦିନ ସକାଳୁ ସେ ନିଜକୁ ଆବିଷ୍କାର କଲେ ବହୁ ଦୂରରେ ଯେଉଁଠି ଜଳନ୍ତା ଜାହାଜର ଚିହ୍ନବର୍ଣ୍ଣ ନଥିଲା । ସମତଳ ନୀଳ ଜଳରାଶି ଲହଡ଼ି ଭାଙ୍ଗି ସତେ ଯେପରି ତା' ବକ୍ଷରେ ଗତ ରାତ୍ରିରେ କୌଣସି ଅଘଟଣ ଘଟିନାହିଁ ଏହା ହିଁ ପ୍ରତିପାଦିତ କରୁଥିଲା । ମାତ୍ର ଏହି ବିଭୀଷିକାମୟ ରାତ୍ରିରେ ସାଗର ବକ୍ଷରେ ଘଟିଥିବା ଲୋମହର୍ଷଣକାରୀ ଚିତ୍ରର ମୂକସାକ୍ଷୀ ଡିସୋଜା ସେହି ଦୃଶ୍ୟ ବିଷୟରେ ସ୍ମରଣ କରିବା ମାତ୍ରେ ତାଙ୍କର ଦେହ ପୁନର୍ବାର ଘର୍ମାକ୍ତ ହୋଇଯାଇଥିଲା । କପାଳ ଉପରୁ ଝାଳ ପୋଛୁ ପୋଛୁ ସେ ସେହି ଯୁବକ ଆଡ଼କୁ ଆଗେଇ ଯାଇ ତାର ଦୁଃଖଦ କାହାଣୀ ଆଉ ନଶୁଣି ଧୈର୍ଯ୍ୟ ଓ ସାହସର ସହିତ ଆଗେ ନିଜର ଜୀବନ ବଞ୍ଚାଇବାକୁ ପରାମର୍ଶ ଦେଇଥିଲେ । ମାତ୍ର ଏ କ'ଣ ! ଯୁବକର ପିଠିର କିଛି ଅଂଶ ପୋଡ଼ିଯାଇ ବିରାଟ ଫୋଟକା ହୋଇ ସାରିଥିଲା । ଏହିପରି ଅସହାୟ ଅବସ୍ଥାରେ ନୀଳସାଗର ବକ୍ଷରେ ଆହତ ଯୁବକକୁ ସାନ୍ତ୍ୱନା ଦେବା ବ୍ୟତୀତ ତାଙ୍କ ନିକଟରେ ଆଉ କ'ଣ ଅଛି ?

ଡିସୋଜାଙ୍କୁ ଚାରିଆଡ଼ ଅନ୍ଧାର ଦିଶୁଥିଲା । ଏବେ ମୃତ୍ୟୁ ନିଶ୍ଚିତ ଭାବେ ନିକଟରୁ ନିକଟତର ହେଉଛି । ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିବା ବ୍ୟତୀତ ତାଙ୍କର ବୋଟ ଆଗେଇ ଚାଲିଥିଲା । ମାତ୍ର କୁଆଡ଼େ ଯିବ ଏହି କ୍ଷୁଦ୍ର ବୋଟ । ନିକଟରେ ଜନବସତିର ସୂଚନା ନାହିଁ, ସ୍ଥଳଭାଗ ଦର୍ଶନ ହିଁ ସ୍ୱପ୍ନ । ତଥାପି ଧର୍ଯ୍ୟ ଧରିବା ବ୍ୟତୀତ ତାଙ୍କ ନିକଟରେ ଅନ୍ୟ କିଛି ପନ୍ଥା ନାହିଁ । ପୁଣି ତାଙ୍କୁ ସାନ୍ତ୍ୱନା ଦେବାକୁ କେହି ନଥିବା ବେଳେ ସାଙ୍ଗରେ ଜଣେ ଗୁରୁତର ଭାବେ ଆହତ ଯୁବକ । ଯୁବକର ମସ୍ତକରେ ହାତ ରଖି ପ୍ରାର୍ଥନା କଲେ ଡିସୋଜା ।

ହେ ପ୍ରଭୁ ! ଆମକୁ ବଞ୍ଚାଇଲ କାହିଁକି ? ତୁମର ଇଚ୍ଛା କଣ ? ଏହି ଅସୀମ ସାଗର ବକ୍ଷରେ କ'ଣ ଆମେ ଛଟପଟ ହୋଇ ମୃତ୍ୟୁ ବରଣ କରିବୁ । ଏହା ଯଦି ତୁମର ଇଚ୍ଛା ତେବେ ଆମକୁ ସାହା ଦେଇ ବଞ୍ଚାଇ ରଖିଲ କାହିଁକି ? ଡିସୋଜାଙ୍କ କୋମଳ ହାତ ସ୍ପର୍ଶରେ ଉକ୍ତ ଯୁବକର ଖୋଲି ଆସିଥିବା ଚକ୍ଷୁ ପୁଣିଥରେ ମୁଦ୍ରିତ ହୋଇଗଲା । ଡିସୋଜା ଧୀର ପାଦରେ ସେଠାରୁ ଉଠିଆସି ବୋଟର ଗୋଟିଏ ମୁଣ୍ଡରେ ମୁଣ୍ଡ ରଖି ନୀଳ ଆକାଶକୁ ଚାହିଁରହିଲେ । ଦିନ ତମାମ ଭୋକ ଉପାସରେ ସାଗର ବକ୍ଷରେ କଟାଇବା ହିଁ ସାର ହେଲା ।



# ମୃତ୍ୟୁ ସହ ସଂଗ୍ରାମ

ତାଙ୍କର ଜୀବନ ରକ୍ଷାକାରୀ ବୋଟଟି ମନଇଚ୍ଛା ଜଳସ୍ରୋତରେ ଭାସି ଚାଲିଥିଲା । ପୂର୍ବଦିନ ଭଳି ସୂର୍ଯ୍ୟଦେବତା ସାଗର ବକ୍ଷରେ ନିଜର ରଶ୍ମିବିଛେଇ ବିଦାୟ ନେଲେ । ଡିସୋଜା ମନେ ମନେ ଭାବୁଥିଲେ, ଗତ ରାତ୍ରିର ସୂର୍ଯ୍ୟାସ୍ତ ଦର୍ଶନ ପରେ କେତେ ନରନାରୀ ଆବାଳ ବୃଦ୍ଧ ବନିତା କାଳର କରାଳ ଗର୍ଭରେ ଅସହାୟ ଭାବେ ଲୀନ ହୋଇଗଲେ । ଏବେ ଆଜିର ସୂର୍ଯ୍ୟାସ୍ତ ଦର୍ଶନ କରୁଥିବା ହତଭାଗ୍ୟ ହୁଏତ ତାଙ୍କର ଏବେ ପାଳି ଆସିଗଲା । ଆଜିର ରାତ୍ରିର ଅନ୍ଧକାର ସହିତ ସେମାନଙ୍କର ଜୀବନଦୀପ ଯେ ଲିଭି ଲିଭି ଆସୁଛି ଏହା ଚିନ୍ତା କରିବା ବ୍ୟତୀତ ଡିସୋଜାଙ୍କ ଆଗରେ ଆଉ କିଛି ଭାବନା ନଥିଲା । ୨୪ ଘଣ୍ଟା ଧରି ପେଟରେ କିଛି ପଡ଼ିନଥିଲା । ଜିଭ ସବୁ ଶୁଖି ଆସିଥିଲା । ସାଗରର ନୀଳଜଳକୁ ବାଧ ହୋଇ ପାଟିରେ ପୂରାଇ ଦେଲେ ଡିସୋଜା । ଏୟାରକଣ୍ଡିସନ ଘରେ ଜୀବନଯାକ ବଢ଼ିଥିବା ଓ ବହୁ ସୁସ୍ୱାଦୁ ଖାଇ ଆସିଥିବା ତାଙ୍କ ଜୀବନରେ ଯେ ଏପରି ଏକ ଦୁର୍ଦ୍ଦିନ ଆସିବ ସେ କଥା କ'ଣ ସେ କଳ୍ପନା କରିଥିଲେ ? ସୂର୍ଯ୍ୟାସ୍ତ ସହିତ ଘନ ଅନ୍ଧକାର ସାଗର ବକ୍ଷକୁ ଆଚ୍ଛାଦିତ କଲା । ଆକାଶରେ ତାରାମାନେ ମିଟିମିଟି କରି ସତେ ଯେପରି ଡିସୋଜା ଓ ତାଙ୍କ ସାଥୀଙ୍କୁ ନିରେଖି ଦେଖୁଥିଲେ । ଦୁର୍ବଳ, ଭୋକିଲା ଶରୀର ସହ ଡିସୋଜାଙ୍କୁ ଯେତେ ବାଧୁନଥିଲା, ନିକଟରେ ଯନ୍ତ୍ରଣାରେ ଛଟପଟ ହେଉଥିବା ଆହତ ଯୁବକର ଯନ୍ତ୍ରଣା ତାଙ୍କୁ ଅଧିକ ବିବ୍ରତ କରୁଥିଲା । ଡିସୋଜା ବେଳେବେଳେ ଭାବୁଥିଲେ ସେ ସାଗର ବକ୍ଷକୁ ଲମ୍ଫ ଦେବେ ଓ ସବୁଦିନ ପାଇଁ ଯନ୍ତ୍ରଣାମୁକ୍ତ ହେବେ ମାତ୍ର ତାଙ୍କୁ ବିବେକ ବାଧା ଦେଉଥିଲା । ସେ ଉଠିଯାଇ ସେହି ଆହତ ଯୁବକର ହାତ ଆଉଁଶି ଦେଇ ଆଶ୍ୱାସନା ଦେଉଥିଲେ । ତାଙ୍କର ଦୁଃଖ ଶୀଘ୍ର ନିଶ୍ଚୟ ଭଗବାନ ଦୂରେଇ ନେବେ । ମାତ୍ର ସେଦିନ ପାଣି ପାଇଁ ଏହି ଯୁବକର ଚିତ୍କାର ତାଙ୍କ ହୃଦୟକୁ କଠୋର ଆଘାତ ଦେଲା । ଶୋଷରେ ଯୁବକର ଓଠ ଶୁଖି ଯାଉଥିଲା । ଡିସୋଜା ଗୋଡ଼ଠାରୁ ମୁଣ୍ଡଯାଏ ଦେଖିଲେ ତାଙ୍କ ନିକଟରେ କିଛି ନାହିଁ । ପକେଟରୁ ଏକ କ୍ଷୁଦ୍ରରୁମାଲ ବାହାର କଲେ ଡିସୋଜା । ତାକୁ ଚିରି ଖଣ୍ଡ ଖଣ୍ଡ କଲେ ଓ ଗୋଟିଏ

ଖଣ୍ଡକୁ ସେହି ଯୁବକ ପାଟିରେ ଦେଇ ଚୋବାଇବାକୁ କହିଲେ । ଶୁଖି ଆସୁଥିବା ପାଟିରେ ହୁଏତ ଲାଳ ସୃଷ୍ଟି ହେବ ଓ କେତେକାଂଶରେ କ୍ଷୁଧାରୁ ମୁକ୍ତି ମିଳିବ ଏହା ଥିଲା ତାଙ୍କର ଅନୁଚିନ୍ତା । ମାତ୍ର ସମୁଦ୍ର ଜଳରେ ସିକ୍ତ ଲବଣାକ୍ତ ରୁମାଲକୁ କେତେ ସମୟ ବା ସେ ଯୁବକ ପାଟିରେ ରଖିପାରିବ । ଜୀବନ ବଞ୍ଚାଇବାକୁ କିଛି ସମୟ ପାଟିରେ ରଖି ବିଷର୍ଣ୍ଣ ମୁହଁରେ ଫିଙ୍ଗିଦେଇଥିଲା ଉକ୍ତ ଯୁବକ ଓ ନିସ୍ତେଜ ହୋଇ ପଡ଼ିରହିଥିଲା ସେହିପରି ଭାବରେ । ବେଳେ ବେଳେ ନିଜର ଭାଗ୍ୟକୁ ଧିକ୍କାରୁ ଥିଲା ସେ ଓ ତାର ଚକ୍ଷୁରୁ ଧାର ଧାର ଲୋତକ ଗଡ଼ି ଆସୁଥିଲା ।

ସେଦିନ ୧୨ ଘଣ୍ଟାର ରାତ୍ରି ପ୍ରାୟ ୧୨ ବର୍ଷ ପରି ଲାଗିଥିଲା ଡିସୋଜାଙ୍କୁ । ପରଦିନ ସୂର୍ଯ୍ୟୋଦୟ ଆସିଲେ ବି ଲାଭ କ'ଣ ? ମୃତ୍ୟୁ କେତେ କଷ୍ଟକର ତାହାକୁ ମର୍ମେ ମର୍ମେ ଅନୁଭବ କରିବାକୁ ବୋଧହୁଏ ଭଗବାନ ସେମାନଙ୍କୁ ବଞ୍ଚାଇ ରଖିଛନ୍ତି । ଏହିପରି ଭାବୁ ଭାବୁ ତାଙ୍କର ଚକ୍ଷୁ ମୁଦ୍ରିତ ହୋଇ ଯାଇଥିଲା ।

ଦେହରେ ପ୍ରଖର ସୂର୍ଯ୍ୟତାପ ଓ ବଡ଼ ଲହରୀ ମାଳାର ପ୍ରଚଣ୍ଡ ଶବ୍ଦରେ ତାଙ୍କର ଚକ୍ଷୁ ପୁଣି ଖୋଲିଲା । ଶରୀର ସମ୍ପୂର୍ଣ୍ଣ ଅବଶ । ହଠାତ୍ ତାଙ୍କର ନୌକା ଆନ୍ଦୋଳିତ ହେବାକୁ ଲାଗିଲା । କିଛି ଦୂରରେ ଅସ୍ପଷ୍ଟ ଭାବେ କିଛି ଦିଶୁଥିଲା । ବୋଧହୁଏ ସ୍ଥଳଭାଗ ।



# ସ୍ଥଳଭାଗ ଦର୍ଶନ

ଡିସୋଜା ଚିତ୍କାର କରି ଉଠିଲେ । ତାଙ୍କର ନିସ୍ତେଜ ଶରୀରରେ ନୂତନ ଶକ୍ତି ସଞ୍ଚାରିତ ହେଲା । ଦୂରରୁ ଉଦ୍ଭିଦରାଜୀର ଦୃଶ୍ୟ ତାଙ୍କ ଦୃଷ୍ଟିଗୋଚର ହେଲା । ଦିଗ୍‌ବଳୟରୁ କେତୋଟି ପକ୍ଷୀ ଉଡ଼ିଆସୁଥିଲେ । ସେମାନଙ୍କ କାକଳୀ ସହିତ ଡିସୋଜା ଆତ୍ମବିଭୋର ହୋଇ ଉଠିଲେ । ଭଗବାନ ସେମାନଙ୍କ ଡାକ ଶୁଣିଛନ୍ତି । ପ୍ରଶାନ୍ତ ମହାସାଗରର ଉତ୍‌ଫୁଲ୍ଲିତ ଜଳରାଶିରେ ଉଠୁଥିଲା ବଡ଼ ବଡ଼ ଢେଉ । ନୀଳ ଆକାଶ ଓ ନୀଳସାଗର ମଝିରେ କିଛି ଦୂରେ ଠିଆ ହୋଇଥିଲା ନୀଳ ପର୍ବତ ଓ ଶ୍ୟାମଳ ବୃକ୍ଷରାଜି । ଅସ୍ପଷ୍ଟ ଭାବେ ଦେଖାଯାଉଥିଲା ଦୂର ଦିଗ୍‌ବଳୟର ଚିତ୍ର । ସେହି ପର୍ବତର ଆଡୁଆଳରୁ ସେଦିନ ସୂର୍ଯ୍ୟ ଦେବତା ମୁଣ୍ଡ ଟେକି ଆକାଶକୁ ଉଠିଲେ । ସେଥିପ୍ରତି ଡିସୋଜା ଓ ଆହତ ଯୁବକଙ୍କ ମନରେ ଦେଖାଦେଲା ନୂତନ ଆଶାର ଅଫୁରନ୍ତ ଆନନ୍ଦ ।

ସେମାନଙ୍କର ଜୀବନଧାତ୍ରୀ ବୋଟଟି ତୀବ୍ର ବେଗରେ ଉପକୂଳ ଆଡ଼େ ସାଗର ସ୍ରୋତରେ ଭାସି ଚାଲିଥିଲା । ଉପକୂଳ କ୍ରମେ ନିକଟରୁ ନିକଟତର ହୋଇ ଆସୁଥିଲା । ଦୁଇଦିନ ସମୁଦ୍ର ଭିତରେ ଗଭୀର ଅନୁଶୋଚନା ଓ ଉଦ୍‌ବେଗ ଭିତରେ ଜୀବନକୁ ପାଣିଛଡ଼ାଇ ସବୁ ମୁହୂର୍ତ୍ତରେ ମୃତ୍ୟୁର କରାଳ ରୂପ ଦର୍ଶନ କରୁଥିବା ଏହି ଦୁଇଜଣ ହତଭାଗ୍ୟ ଲୋକଙ୍କର ଅବଶ ଶରୀର ସତେ ଯେପରି ନୂତନ ଚେତନା ଲାଭ କରିଥିଲା । ଭୋକଶୋଷ ଭୁଲି ସେମାନେ ଉପକୂଳ ଦର୍ଶନ ଚିନ୍ତାରେ ବିଭୋର ହୋଇ ଉଠୁଥିଲେ । ଡିସୋଜା ଚିନ୍ତା କରୁଥିଲେ ଉପକୂଳରେ ପହଞ୍ଚିବା ମାତ୍ରେ ତାଙ୍କର ପ୍ରଥମ କାମ ହେବ ଏହି ଆହତ ଯୁବକଙ୍କୁ ଚିକିତ୍ସା କରିବା । ନିଜ ଆଖି ଆଗରେ ନିଜର ପ୍ରାଣପ୍ରିୟ ପତ୍ନୀ ଓ ଶିଶୁ ସନ୍ତାନକୁ ମୃତ୍ୟୁ ମୁଖରେ ପଡ଼ିଥିବାର ଚିତ୍ର ଦେଖି କେଉଁ ସ୍ୱାମୀ ସହ୍ୟ କରିପାରିବ । ସେଥିପାଇଁ ସବୁବେଳେ ସେ ଯୁବକ ବିଷର୍ଣ୍ଣ ଥିଲେ ଓ ମନେ ମନେ ସେମାନଙ୍କୁ ଝୁରି ହେଉଥିଲେ । ହୁଏତ ଯଦି ତାଙ୍କର ସ୍ତ୍ରୀ ଓ ପିଲା ଏବେ ତାଙ୍କ ନିକଟରେ ଥାନ୍ତେ, ତେବେ ତାଙ୍କର କ୍ଷତି ତାଙ୍କୁ ଏତେ କଷ୍ଟ ଦିଅନ୍ତା ନାହିଁ ।

ସ୍ଥଳଭାଗ ନିକଟରୁ ନିକଟତର ହେଲା । ପୂର୍ଣ୍ଣମୀ ବୋଧହୁଏ ନିକଟ । ଏବେ ସ୍ଥଳଭାଗ ସାଗର ବକ୍ଷରୁ ସ୍ପଷ୍ଟ ଦିଶିଲାଣି । ସାଗରର ଉତ୍‌ଫୁଲ୍ଲିତ ଜଳରାଶି ଉପକୂଳର ବହୁ ବୃକ୍ଷଙ୍କୁ ଜୁଆରିଆ ନୀଳ ଜଳ ଭିତରେ ବୁଡ଼ାଇ ରଖିଛି ।



କେତେକ ବିରାଟକାୟ ବୃକ୍ଷର ମୂଳ ସାଗର ଜଳରେ ବୁଡ଼ି ରହିଛି ଓ ବଡ଼ ବଡ଼ ଲହରୀ ସବୁ ଖୁବ୍ ଜୋରରେ ଯାଇ ଏହି ବୃକ୍ଷ ଦେହରେ ମାଡ଼ ହେବାବେଳେ ଶକ୍ତିଶାଳୀ ଓ ବଡ଼ ଗଛ ସବୁ ଆନ୍ଦୋଳିତ ହୋଇ ଦୋହଲି ଉଠୁଛି । ଘଞ୍ଚ ଜଙ୍ଗଲ ଓ ବୃକ୍ଷରାଜି ବ୍ୟତୀତ ଅନ୍ୟ କିଛି ଡିସୋଜାଙ୍କର ଦୃଷ୍ଟିଗୋଚର ହେଲା ନାହିଁ । ବିରାଟ ଲହଡ଼ି ଟପି ସେମାନଙ୍କର କ୍ଷୁଦ୍ର ପୋତ କିପରି ଉପକୂଳ ଛୁଇଁବ ସେହି ଚିନ୍ତାରେ ଡିସୋଜା ମଗ୍ନ ଥିଲେ । ମାତ୍ର ଯାହା କରିବାକୁ ହେବ ଶୀଘ୍ର ଚିନ୍ତା କରିବା ଦରକାର । ହାତରେ ଆଉ ସମୟ ନାହିଁ । ଖୁବ୍ ନିକଟରେ ସ୍ଥଳଭାଗ । ଆଗରେ ଆନ୍ଦୋଳିତ ଲହରୀମାଳା । ମନେ ହେଉଛି ସତେ ଯେପରି ତାଙ୍କର କ୍ଷୁଦ୍ର ପୋତକୁ ଆକାଶକୁ ଉଠାଇ ନେଇ ତଳକୁ କଚାଡ଼ି ଦେବ ଓ ସେମାନଙ୍କୁ ସାଗର ଜଳରେ ନିକ୍ଷେପ କରି ନିଜେ ମୁକ୍ତ ହୋଇଯିବ । ଡିସୋଜାଙ୍କୁ ଚିନ୍ତା

କରିବାକୁ ସମୟ ନଥିଲା । ସେ ହଠାତ୍ ଧାଇଁଯାଇ ଆହତ ଯୁବକଙ୍କୁ ଶକ୍ତ ଭାବରେ କୁଣ୍ଢାଇ ଧରିଲେ ଓ ଉଭୟେ ବୋଟର ନିମ୍ନ ଦେଶରେ ଶୋଇରହି ଭଗବାନଙ୍କୁ ପ୍ରାର୍ଥନା କଲେ । ତାଙ୍କର ବୋଟ କିଛି ସମୟ ତଳ ଉପର ଲହରୀମାଳାରେ ଆନ୍ଦୋଳିତ ହେଲା ଓ କ୍ରୁର ସାଗର ଜଳ ନିଚା ବୋଟର ଫନ୍ଦକୁ ଅତିକ୍ରମ କରି ସେମାନଙ୍କୁ ବହୁବାର ସିକ୍ତ କଲା । ଆନ୍ଦୋଳିତ, ଦୋଳାୟମାନ ବୋଟ କିଛି ସମୟ ପରେ ଯାଇ ଏକ ବୃକ୍ଷ ଦେହରେ ମାଡ଼ ହୋଇ ଅଟକି ଗଲା । ଡିସୋଜା ଏହି ସୁଯୋଗର ଅପେକ୍ଷାରେ ଥିଲେ । ସେ ହଠାତ୍ ନିକଟସ୍ଥ ବୃକ୍ଷକୁ ଧରି ନେଲେ । ମାତ୍ର ଖୁବ୍ ଜୋରରେ ମାଡ଼ ହୋଇଯାଇଥିବାରୁ ବୋଟଟିର ଗୋଟିଏ ଅଂଶ ଫାଟି ଯାଇଥିଲା । ସେଥିପ୍ରତି ଡିସୋଜାଙ୍କର ଲକ୍ଷ୍ୟ ନଥିଲା । ଏବେ ତାଙ୍କର ଆଉ ବୋଟର ଆବଶ୍ୟକତା କ'ଣ ? ସେମାନେ ତ ସ୍ଥଳଭାଗରେ ପହଞ୍ଚି ଯାଇଛନ୍ତି । ତଥାପି ଡିସୋଜା ତଳକୁ ଡେଇଁପଡ଼ି ବୋଟରେ ଥିବା ରଜ୍ଜୁକୁ ଏକ ବୃକ୍ଷରେ ବାନ୍ଧିଦେଲେ ଓ ସେହି ଅଜଣା ଦ୍ୱୀପରେ ପାଦ ଦେଲେ ।



# ଅଜଣା ଦ୍ୱୀପରେ

ସେତେବେଳକୁ ମଧ୍ୟାହ୍ନ ଆସନ୍ନ । ସୂର୍ଯ୍ୟଦେବତା ଠିକ୍ ମୁଣ୍ଡ ଉପରେ ଉଭା ହୋଇ ନୀଳ ସାଗର ଜଳର ବ୍ୟାପକତାକୁ ବୋଧହୁଏ କଳନା କରୁଥିଲେ । ଆଗରେ ଘଞ୍ଚ ଜଙ୍ଗଲ । ବେତ ଓ ଅନ୍ୟ ଅରମା ଗଛ ସବୁ ସାଗର ଜଳକୁ କିଛି ବାଟ ମାଡ଼ିରହି ଅସ୍ଥିର ଜଳରେ ଆନ୍ଦୋଳିତ ହେଉଥିଲା । ନିକଟରେ ଆକାଶକୁ ମୁଣ୍ଡଟେକିଥିବା ବିରାଟକାୟ ବନି, ଓକ ଜାତୀୟ ଗଛ ବେଢ଼ିରହି ସୂର୍ଯ୍ୟତାପକୁ ପ୍ରତିରୋଧ କରୁଥିଲା । ସୂର୍ଯ୍ୟତାପ କିନ୍ତୁ ମଝିରେ ମଝିରେ ପତ୍ରର ସାନ୍ଦ୍ରତାକୁ ଅତିକ୍ରମ କରି ସ୍ଥଳଭାଗ ଉପରେ ପଡୁଥିଲା । ଡିସୋଜା ଉପରକୁ ଚାହିଁ ବୃକ୍ଷର ଉଚ୍ଚତାକୁ କଳନା କରିବାକୁ ଚେଷ୍ଟା କରୁଥିଲେ । ସେତେବେଳ ଯାଏ ସେହି ଯୁବକଟି ବୋଟ ଉପରେ ଶୋଇ ରହି ଆନ୍ଦୋଳିତ ଜଳରାଶିରେ ଉପରତଳ ହେଉଥିଲେ । ନିକଟରୁ ଝିଙ୍କାରୀର ଝିଁ ଝିଁ ଶବ୍ଦ ଭାସି ଆସୁଥିଲା । ଘଞ୍ଚ ଜଙ୍ଗଲ ନିକଟରେ ସେମାନେ ଯେ ଆସି ପହଞ୍ଚିଛନ୍ତି ଏକଥା ବୁଝିବାକୁ ଡିସୋଜାଙ୍କୁ ଆଉ ବାକି ନଥିଲା । ଯାହା ହେଲେ ବି ଏହା ସ୍ଥଳଭାଗ । ଭୀମ ଅସୀମ ସାଗର ବକ୍ଷଠାରୁ ଭିନ୍ନ । ମାନବର ଲୀଳା କ୍ଷେତ୍ର, ବାସସ୍ଥାନ । ମାତ୍ର ସେମାନେ କେଉଁ ବାଟ ଦେଇ ସ୍ଥୁଳଭାଗକୁ ଯିବେ ତାହାହିଁ ଡିସୋଜା ଅନ୍ୱେଷଣ କରୁଥିଲେ ସେ ଏକୁଟିଆ ଥିଲେ ଅଲଗା କଥା ମାତ୍ର ସାଙ୍ଗରେ ଜଣେ ଗୁରୁତର ଆହତ ଯୁବକ । ତାର ନିରାପତ୍ତା ଓ ସେବା ଦାୟିତ୍ୱ ବର୍ତ୍ତମାନ ସମ୍ପୂର୍ଣ୍ଣ ତାଙ୍କ ଉପରେ । ଝିଙ୍କାରୀର ଝିଁ ଝିଁ ଶବ୍ଦ ଡିସୋଜାଙ୍କ କାନ ପରଦାକୁ ଫଟାଇ ଦେଲାପରି ଲାଗୁଥିଲା । ବଣ ଝିଙ୍କାରୀର ଶବ୍ଦ ସାଧାରଣ ଝିଙ୍କାରୀଠାରୁ ଯେ କେତେ ଅଧିକ ଉତ୍କଟ ହୋଇଥାଏ ଏହା ସେଦିନ ଡିସୋଜା ଅନୁଭବ କଲେ । ବାଟ ଖୋଜି ସ୍ଥଳଭାଗକୁ ଯିବା ପାଇଁ ଚିନ୍ତା କରିବାକୁ ସମୟ ନାହିଁ । ଦୁର୍ଘଟଣା ପରଠାରୁ ସେ ବହୁ କଠୋର ପରୀକ୍ଷା ଓ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ଏବଂ ନିଜ ବୁଦ୍ଧିରେ ସେ ସବୁର ସମାଧାନ କରି ଆସିଛନ୍ତି । ନୌକା ଉପରେ ପଡ଼ିରହି ଆନ୍ଦୋଳିତ ଲହରୀମାଳା ଦ୍ୱାରା ଉପରତଳ ହେଉଥିବା କ୍ଷତବିକ୍ଷତ ଯୁବକ ନିଜ ଦେହରେ ବାରମ୍ବାର ଆଘାତ ପାଇ ଚିତ୍କାର କରୁଥିବାରୁ ଶୀଘ୍ର ତାକୁ ସ୍ଥଳଭାଗ ଉପରକୁ ହିଁ ଉଠାଇ

ଆଣିବାକୁ ପଡ଼ିବ ନଚେତ୍ ନିସ୍ତାର ନାହିଁ । ଡିସୋଜା କ'ଣ କରିବେ ଚିନ୍ତା କରୁଥିବା ବେଳେ ହଠାତ୍ ତାଙ୍କ ମୁଣ୍ଡକୁ ଏକ ବୁଦ୍ଧି ଆସିଗଲା । ଜଳଭାଗ ଆଡ଼କୁ ମାଡ଼ି ଆସିଥିବା ଏକ ବେତ ଖଣ୍ଡକୁ ସେ ଧରି ଟାଣିଲେ ଏବଂ ଏକ ବୁଦାର ନିକଟବର୍ତ୍ତୀ ହେଲେ । ବୁଦା ତଳେ ସରିସୃପ ବା ସ୍ୱାପଦ, ସାପଭଳି ମାରାତ୍ମକ ଜନ୍ତୁଥିବା ଅସମ୍ଭବ ନଥିଲା । ସେହି ବେତରୁ ଖଣ୍ଡେ ଭାଙ୍ଗି ସେ ସେହି ବୁଦା ଉପରେ ପ୍ରହାର କଲେ । ତାଙ୍କର ଧାରଣା ଥିଲା ଯଦି କୌଣସି ସ୍ୱାପଦ ଥିବେ ସେମାନେ ତାଙ୍କର ପ୍ରହାର ଦ୍ୱାରା ସେଠାରୁ ଚାଲିଯିବେ । ଏହାପରେ ସେ ଲଟାପରି ଲମ୍ବି ରହିଥିବା ବୁଦା ଉପରେ ଆସ୍ତେକରି ପାଦ ପକାଇଲେ । ତାଙ୍କ ଶରୀରକୁ ସେହି ଘଞ୍ଚ ବୁଦା ସମ୍ଭାଳି ନେଲା । ଦୁଇ ଦିନର ଭୋକିଲା ନିସ୍ତେଜ ଶରୀର । ବହୁବାର ସାଗର ଜଳରେ ଓଦା ହୋଇ ଶରୀର କେମିତି ଅବଶ ଲାଗୁଥିଲା । ସେ ଅନ୍ୟ ଏକ ଡାଳର ଭାରା ଦେଇ ଆଗେଇଲେ ଓ କୁଦାମାରି ଡେଇଁ ପଡ଼ି ସ୍ଥଳଭାଗ ଉପରେ ପଡ଼ିଲେ । ସ୍ଥଳଭାଗ ଅନାବନା ଘାସ ଓ ଘଞ୍ଚ ଜଙ୍ଗଲ ବୃକ୍ଷରେ ପୂର୍ଣ୍ଣଥିଲା । ସେ କେଉଁଠାରେ ପହଞ୍ଚିଲେ, କୁଆଡ଼େ ଯିବେ ଏ ବିଷୟରେ ଭାବିପାରୁ ନଥିଲେ ।

ପ୍ରଥମ କାମ ଥିଲା ନୌକା ଉପରୁ ଆହତ ଯୁବକକୁ ଉଦ୍ଧାର କରି ଆଣିବା । ଡିସୋଜା ନିଜ ହାତରେ କେତେକ ସ୍ଥାନ ଗଛକୁ ଭାଙ୍ଗି କିଛି ସ୍ଥାନ ସଫା କଲେ । ସ୍ଥଳ ଭାଗ ସନ୍ତସନ୍ତିଆ ଥିଲା । ସୂର୍ଯ୍ୟାଲୋକ ବୋଧହୁଏ ଏଠାରେ କେବେ ପଡ଼ିବା ସମ୍ଭବ ନଥିଲା । ନିକଟରେ ବିଛା, ବହୁ ପୋକ ସେମାନଙ୍କର ନିଜସ୍ୱ ଏହି ସାମ୍ରାଜ୍ୟରେ ସ୍ୱାଧୀନ ଭାବେ ବିଚରଣ କରୁଥିଲେ । ଡିସୋଜା କିଛି ତାଳପତ୍ର ଭାଙ୍ଗି ତଳେ ପକାଇ ଏକ ଶେଜ ଆକୃତିର ତିଆରି କଲେ ଓ ଆହତ ଯୁବକକୁ ଉଦ୍ଧାର କରିବାକୁ ନୌକା ଆଡ଼କୁ ଅଗ୍ରସର ହେଲେ ।

ଯନ୍ତ୍ରଣାରେ ଚିତ୍କାର କରୁଥିବା ସେହି ଯୁବକ ଦେହରେ ହାତ ଦେଉ ଦେଉ ଡିସୋଜା ଚମକି ପଡ଼ିଲେ । ଏ କ'ଣ ! ଯୁବକ ଦେହ ଉତ୍ତପ୍ତ । କ୍ଷତଜନିତ ଘଟଣା ଓ ଦୁଇ ଦିନଧରି ସାଗର ଜଳରେ ଶିକ୍ତ, ଭୋକିଲା ଯୁବକ ଅତି ବିରସ ଦିଶୁଥିଲେ ! ତାଙ୍କ ମୁଖମଣ୍ଡଳରୁ ପୂର୍ବ ସତେଜତା ଉଭେଇ ଯାଇଥିଲା । ମୁହଁ କଳାପଡ଼ି ଯାଇଥିଲା ଏବଂ ସେ ଜ୍ୱରରେ କମ୍ପୁଥିଲେ । ଡିସୋଜା ନିଜ ଦେହର ସଫାରୀ ଖୋଲି ସେହି ଯୁବକ ଦେହରେ ଢାଙ୍କି ଦେଲେ ମାତ୍ର ତାହା କିଛି ହେଲା

ନାହିଁ । ଯୁବକଙ୍କୁ ଆଶ୍ୱାସନା ଦେଇ ତାଙ୍କ କାନ୍ଧଧରି ଆଗେଇ ଆସିବାକୁ ଡିସୋଜା ଅନୁରୋଧ କଲେ । ବହୁ କଷ୍ଟରେ ସେହି ଯୁବକକୁ ଧରି ସେ ଆଗେଇଲେ ଓ ଖଣ୍ଡିଆ ହୋଇଥିବା ଗୋଡ଼କୁ ଉପରକୁ ଟେକି ଯୁବକକୁ ନିଜ କାନ୍ଧରେ ଆଶ୍ରୟ ଦେଇ ସେ ଆସ୍ତେ ଆସ୍ତେ ଆଗେଇଲେ । ବେତ ବୁଦାକୁ ଆଗରୁ ଡିସୋଜା ସଫାକରି ଏକ ଛୋଟ ବାଟ କରିଦେଇଥିଲେ । ସେହି ବାଟେ ବହୁ କଷ୍ଟରେ ଆସ୍ତେ ଆସ୍ତେ ଆଗେଇଲେ ଡିସୋଜା । ଉଭୟେ ଶକ୍ତିହୀନ, ପ୍ରଥଶ୍ରାନ୍ତ, କ୍ଷୁଧାର୍ତ୍ତ ଏବଂ ସବୁବେଳେ ମୃତ୍ୟୁ ଆସିଯିବା ଭଳି ଅବସ୍ଥାରେ ଦୀର୍ଘ ୨୫ ଘଣ୍ଟା କଟାଇ ଆସିଛନ୍ତି । ଆଶା ହିଁ ସେମାନଙ୍କ ପାଇଁ ମୁଖ୍ୟ ସାହାରା, ଆଶ୍ୱାସନା ଦେବାକୁ କେହି ନାହିଁ । ନିଜେ ନିଜକୁ ପ୍ରବୋଧନା ଦେଇ ମଣିଷ କେତେ ସମୟ ବଞ୍ଚି ପାରିବ, ଦୁର୍ଗମ ପଥରେ ଆଗେଇ ପାରିବ ? ମାତ୍ର ସବୁକୁ ସହିନେଇ ଅତ୍ୟନ୍ତ ସାହସ ପ୍ରଦର୍ଶନ କରି ଧୀର, ସ୍ଥିରଭାବେ ଭଗବାନଙ୍କୁ ସ୍ମରଣ କରି ଆଗେଇ ଚାଲିଥିଲେ ଡିସୋଜା । ତାଙ୍କର ଦେହ ହାତ ମଧ୍ୟ କ୍ରମେ ଅବସ ହୋଇ ଆସୁଥିଲା । ବହୁ କଷ୍ଟରେ ସେମାନେ ଯାଇଁ ସେହି ପତ୍ର ବିଛା ହୋଇଥିବା ସ୍ଥାନରେ ପହଞ୍ଚିଲେ ।

ଗୋଧୂଳି ଆଗତ ପ୍ରାୟ । ଆଗକୁ ମାଡ଼ି ଆସୁଛି ସନ୍ଧ୍ୟା ଏବଂ କାଳରାତ୍ରି । ଦୁଇଟି ବିଭୀଷିକାମୟ ରାତ୍ରି ସେମାନେ କଟାଇ ସାରିଛନ୍ତି । ଆଜିର ରାତ୍ରି ତାଙ୍କ ପାଇଁ କ'ଣ ହେବ ସେ ବିଷୟରେ ଚିନ୍ତା କରିବାକୁ ବେଳ ନାହିଁ । ଯାହା ହେଲେ ବି କିଛି ଖାଦ୍ୟ ଯୋଗାଡ଼ କରିବାକୁ ହେବ । ନଚେତ କ୍ଷୁଧାରେ ହିଁ ସେମାନଙ୍କର ମୃତ୍ୟୁ ଘଟିବା ସୁନିଶ୍ଚିତ । ମାତ୍ର ଘଞ୍ଚ ଜଙ୍ଗଲ ଭିତରେ ଖାଦ୍ୟ କେଉଁଠୁ ମିଳିବ । ଡିସୋଜା ଆହତ ଯୁବକକୁ ସେହି ସ୍ଥାନରେ ଶୁଆଇ ଦେଇ ଖାଦ୍ୟ ଅନ୍ୱେଷଣରେ ଆଗେଇଲେ । ଆଗକୁ ପାଦ ପକାଇବାକୁ ରାସ୍ତା ନାହିଁ, ଅବଶ ପାଦ ଆଗକୁ ଯିବାକୁ ନାରାଜ । ମାତ୍ର କୌଣସିମତେ ତ ଜୀବନ ବଞ୍ଚାଇବାକୁ ହେବ । ଥରିଲା ଦେହରେ କିଛିବାଟ ଆଗେଇଲେ ଡିସୋଜା । ଘଞ୍ଚ ଲତାକୁ ଆଡ଼େଇ ଆଡ଼େଇ ସେ ଅତିଶୟ ଦୁର୍ବଳ ହୋଇ ପଡ଼ିଥିଲେ । ଭାବୁଥିଲେ ଏହିଠାରେ ହିଁ ଖାଦ୍ୟ ଖୋଜୁଖୋଜୁ ତାଙ୍କର ମୃତ୍ୟୁ ଘଟିବ । ସେ ଧୀର ପଦରେ ଆଗେଇ ଯାଉଯାଉ ହଠାତ୍ ଥକ୍କା ମାରି ବସି ପଡ଼ିଲେ । ଆଖିବୁଜି ହୋଇ ଆସୁଥିଲା । ବୁଜିଲା ଆଖିରେ ସେ ଅସ୍ପଷ୍ଟ ଭାବେ ଆଗରେ

ଓହଳିଥିବା ଏକ ସୁନ୍ଦର ଫଳ ଦେଖିଲେ । ତାଙ୍କ ମନରେ ଆଶାର ସଞ୍ଚାର ହେଲା । କଖାରୁ ଆକୃତିର ଏହି ଫଳ ଅତ୍ୟନ୍ତ ସୁନ୍ଦର ଥିଲା । କିଛି ନ ଭାବି ସେ ଉଠିଯାଇ ସେହି ଫଳକୁ ନେଇ ଆସିଲେ ଓ ଆନନ୍ଦରେ ଭାଙ୍ଗି ଚୋବାଇବାରେ ଲାଗିରେ । ତାହା ଅସ୍ୱାଦୁ ଥିଲା । କାରଣ ଏହା ଏକ ବଣ ଫଳ ଥିଲା । କଖାରୁ ଜାତୀୟ ପରିବା ହୋଇ ପାରେ । ମାତ୍ର ତାହା ତାଙ୍କୁ ଯେତେ ଖରାପ ଲାଗିଲେ ବି ଜୀବନ ବଞ୍ଚାଇବାକୁ ତ କିଛି ଖାଇବାକୁ ହେବ । ସେଥିରୁ ଅଧାଅଧି ଖାଇ ଆଉ ଅଧେ ହାତରେ ଧରି ଡିସୋଜା ଫେରିଲେ ଯୁବକ ନିକଟକୁ ।

ଯୁବକ ସେତେବେଳ ଯାଏ ଜ୍ୱରରେ ଥରୁଥିଲେ । କଞ୍ଚା ଫଳ ଖାଇବା ତା ପକ୍ଷେ ଅସମ୍ଭବ ଥିଲା । ତଥାପି ପାଟିରେ ଟିକେ ଦେଇ ଯୁବକ ତାକୁ ହତାଶାରେ ଫିଙ୍ଗି ଦେଲେ । ଆଉ ଉପାୟ କ'ଣ ? ଆଗରେ ରାତ୍ରି । ତାଙ୍କୁ କିଛି ବୁଦ୍ଧିବାଟ ଦିଶୁ ନଥିଲା । ଯେମିତି ହେଲେ ଯୁବକର ଆଶୁ ଚିକିତ୍ସା ପ୍ରଥମେ ଆବଶ୍ୟକ । ମାତ୍ର ଏ ଘଞ୍ଚ ଜଙ୍ଗଲ ଭିତରେ ସେ ଏକାକୀ କରିବେ କ'ଣ ?

ନିକଟରେ କ'ଣ କିଛି ଜନପଦର ଚିହ୍ନ ନାହିଁ ? ଏହା ଜାଣିବାକୁ ଡିସୋଜା ଏକ ବୃକ୍ଷ ଉପରକୁ ଚଢ଼ିଲେ । କିଛି ଦୂରରେ ଏକ ଶ୍ୟାମଳ ପର୍ବତ ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଥିଲା । ସୂର୍ଯ୍ୟ ଦେବତା ସମୁଦ୍ର ଜଳ ସ୍ପର୍ଶ କଲେଣି । ଆଉ କିଛି ସମୟ ପରେ ରାତ୍ରି । ବହୁ ଉଚ୍ଚଯାଏ ଚଢ଼ି ଡିସୋଜା ଚାରିଆଡ଼କୁ ଚାହିଁଲେ । ମାତ୍ର ସବୁଜ ବନାନୀ ବ୍ୟତୀତ ଆଉ କିଛି ତାଙ୍କର ଦୃଷ୍ଟି ଗୋଚର ହେଲା ନାହିଁ । ସମୁଦ୍ର କୂଳର ସେହି ସନ୍ତସନ୍ତିଆ ସ୍ଥାନଛାଡ଼ି ସେ ଆଗେଇବାକୁ ଚାହିଁଲେ । ତାଙ୍କର ମନେ ହେଲା ହୁଏତ ପର୍ବତ ଉପତ୍ୟକାରେ କିଛି ଜନପଦର ସଙ୍କେତ ଥାଇପାରେ । ସେଠାରେ ପହଞ୍ଚିବାପରେ ଯୁବକର ସେବା ଶୁଶ୍ରୂଷା କରିବା ସମ୍ଭବ ହେବ । ଆହତ ଯୁବକ ଏକ ପ୍ରକାର ତାଙ୍କ କାନ୍ଧରେ ଭାରା ଦେଇ ଚାଲିଥିଲା । ଦୁଇ ତିନି ପାଦ ଯିବାପରେ ସେମାନେ ଅଟକୁ ଥିଲେ । ବିପଦଶଙ୍କୁଳ ଜଙ୍ଗଲ, ରାସ୍ତା ନାହିଁ । ତଳେ ବିଷାକ୍ତ କୀଟ ପତଙ୍ଗ । ଉପରୁ ମାଙ୍କଡ଼ ଜାତୀୟ ଜୀବଙ୍କର ଭୟଙ୍କର କୁହାଟ ଶୁଭୁଥିଲା । ଏହି ମାଙ୍କଡ଼ ଗୁଡ଼ାକ ଅତି ଛୋଟ ଥିଲେ । କେତେକ ଏଡ଼ାଳରୁ ସେ ଡାଳକୁ ଡେଇଁ ଚିଁ ଚିଁ ଶବ୍ଦକରି ସେମାନଙ୍କୁ ଖତେଇ ହେଉଥିଲେ ଓ ଚିତ୍କାର କରୁଥିଲେ । ବୋଧହୁଏ ସେମାନେ

ଜୀବନରେ ପ୍ରଥମ ଥର ପାଇଁ ମଣିଷକୁ ଦେଖିଲେ । ଦୂରରୁ ବଣ୍ୟ ଜୀବ-ଜନ୍ତୁଙ୍କର କୁହାଟ, ଚିତ୍କାର ଶୁଭୁଥିଲା । ସେମାନେ ଏକ ପ୍ରକାର ଜଡ଼ ପାଲଟି ଯାଇଥିଲେ । ଦୁଇଜଣଙ୍କ ଚକ୍ଷୁ ମୁଦ୍ରିତ ହୋଇ ଆସୁଥିଲା ।

ଆଗରେ ଏକ ବିରାଟ ଅଶ୍ୱତ୍‌ଥ ବୃକ୍ଷ । ଶାଖା ପ୍ରଶାଖା ପ୍ରାୟ ଅଧ ଏକର ଯାଏ ଲମ୍ବି ରହିଛି । ବୃକ୍ଷର ମୋଟା ମୋଟା ଶିଅ (ଚେର) ବୃକ୍ଷ ମୂଳରୁ ଚାରିଆଡ଼କୁ ଲମ୍ବିଯାଇଛି । ଡିସୋଜା ଆଉ ଚାଲିପାରିଲେ ନାହିଁ । ତାଙ୍କ ଚାଲିବାର ଅନ୍ତଃ କେଉଁଠି ? ଅଜାଣତରେ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା । ହାୟ ଭଗବାନ କହି ସେ ବସିପଡ଼ିଲେ ଏକ ମୋଟ ଅଶ୍ୱତ୍‌ଥ ଗଛ ଶିଅ ଉପରେ । ଯୁବକଟି ମଧ୍ୟ ସେହିପରି ବସି ପଡ଼ିଲା । ଘନ ଅନ୍ଧକାର ସେତେବେଳେ ସମଗ୍ର ଜଙ୍ଗଲକୁ ଆକ୍ରାନ୍ତ କରିସାରିଥିଲା । ଗଛମୂଳ ଟିକେ ପରିଷ୍କାର ଥିବାରୁ ଖୋଲା ଲାଗୁଥିଲା । ସେମାନେ ସେହିଠାରେ ରାତ୍ରିଟି କଟାଇବାକୁ ସ୍ଥିର କଲେ । କିଛି ସମୟ ପରେ ତାଙ୍କୁ ଟିକେ ଫର୍ଚ୍ଚା ଫର୍ଚ୍ଚା ଲାଗିଲା । ଆଜି ବୋଧହୁଏ ଦ୍ୱିତୀୟା ତିଥି । ଆକାଶରେ ଚନ୍ଦ୍ରମାର ଆବିର୍ଭାବ ସହିତ ଜଙ୍ଗଲ ଭିତରଟା ସଫା ସଫା ଲାଗିଲା । ରାତ୍ରି ପ୍ରାୟ ଦୁଇ ପ୍ରହର ହେଲାଣି । ଡିସୋଜାଙ୍କ ଆଖି ବୁଜି ହୋଇ ଆସୁଥିଲା । ଆହତ ଯୁବକ ଜ୍ୱରରେ ସେତେବେଳଯାଏ ଚିତ୍କାର କରୁଥିଲେ ।

ମାତ୍ର ହଠାତ୍ ଡିସୋଜାଙ୍କ ବୁଜି ହୋଇ ଆସୁଥିବା ଚକ୍ଷୁ ଖୋଲିଗଲା । ସେ ବସିଥିବା ବିରାଟକାୟ ଅଶ୍ୱତ୍‌ଥ ଗଛ ଶିଅ ହଠାତ୍ ଆପଣାଛାଏଁ ହଲିବାକୁ ଲାଗିଲା । ସେ ଏହାର କାରଣ ବୁଝିପାରିଲେ ନାହିଁ । ଶିଅଟାଏ ଆପଣାଛାଏଁ କିପରି ହଲୁଛି ତାହା ଜାଣିବାକୁ ତାଙ୍କ ମନ ଉଦ୍‌ବିଗ୍ନ ହୋଇଉଠିଲା । ତେବେ ସେ କଣ ଏକ ଅଜଣା ଆତଙ୍କମୟ ମାୟାନଗରୀରେ ପହଞ୍ଚିଲେ କି ? ଏହା ଭାବିବା ମାତ୍ରେ ସେ ଶିଅ ଦେହରେ ନିଜର ହାତ ମାରି ପରୀକ୍ଷା କରିବାକୁ ଚେଷ୍ଟା କଲେ । ମାତ୍ର ଶିଅଟା ତାଙ୍କ ହାତକୁ ନରମ ଲାଗିଲା ଏବଂ ଏହା ଉଷ୍ମ ଥିଲା । ତାଙ୍କ ଲୋମ ମୂଳ ଟାଙ୍କୁରି ଉଠିଲା । ସେ ଶିଅକୁ ପରୀକ୍ଷା କରି କରି ଆଗେଇ ଯାଉଥିବା ବେଳେ ଚମକି ଉଠି ପଛେଇ ଆସିଲେ । ଦୁଇଟା ରକ୍ତିମ ଆଖି ଅନ୍ଧାର ଭିତରେ ଦାଉ ଦାଉ ହୋଇ ଜଳୁଥିଲା । ତାଙ୍କୁ ଆଉ ବୁଝିବାକୁ ଡେରି ଲାଗିଲା ନାହିଁ ଯେ ସେ ବସିଥିବା ଗଛର ଶିଅ ଏକ ବିରାଟ ଅଜଗର ସାପ । ଅଜଗରଟି ଖୁବ୍ ନିକଟରେ ଏକ ବିରାଟକାୟ ଜଙ୍ଗଲ ଜନ୍ତୁକୁ ଖାଇ ସେଠାରେ ପଡ଼ିଥିଲା ।

ସେତେବେଳ ଯାଏ ଜନ୍ତୁଟିର ମୁଣ୍ଡଟି ତା ପାଟି ବାହାରେ ରହିଥିଲା ଏବଂ ସେ ଏହାକୁ ଆସ୍ତେ ଆସ୍ତେ ଗିଳି ଚାଲିଥିଲା । ନଚେତ ସେମାନଙ୍କର ଯେ କି ଅବସ୍ଥା ହୋଇଥାନ୍ତା ସେ କଥା ଡିସୋଜା ଚିନ୍ତା କରୁଥିଲେ । ହୁଏତ କେତେ ବେଳୁ ସେମାନେ ଅଜଗରର ଶୀକାର ବନି ତା ପାକସ୍ଥଳୀ ଭିତରେ ରହି ସାରନ୍ତେଣି । ତଥାପି ଅଜଗର ତାଙ୍କୁ ଗୁଡ଼ାଇ ରଖିବା ଅସମ୍ଭବ ନୁହେଁ । ତାଙ୍କୁ ଆଉ ଭାବିବାକୁ ବେଳ ନଥିଲା । ଜୀବନ ବଞ୍ଚାଇବାକୁ ସେ ତତ୍‌କ୍ଷଣାତ ସେହି ଯୁବକଙ୍କୁ ଧରି ଝାପ୍‌ସା ଆଲୋକ ଭିତରେ ଅଗ୍ରସର ହେଲେ । ପଛରେ ମୃତ୍ୟୁର ବିଭୀଷିକା, ଆଗରେ ଥଳକୂଳ ନଥିବା ସୀମାହୀନ ଜଙ୍ଗଲ । ସେମାନେ କେତେବାଟ କେତେ ସମୟ ଜଙ୍ଗଲ ଭିତରେ ଚାଲିଥିଲେ ତାହା ସେମାନେ ନିଜେ ବି ଜାଣିନଥିଲେ ।

କିଛି ସମୟପରେ ସେମାନେ ଏକ ଖୋଲା ସ୍ଥାନରେ ପହଞ୍ଚିଲେ । ସେଠାରେ ଗଛ ବୃକ୍ଷ କିଛି ନଥିଲା । ଏକ ଛୋଟ ପାହାଡ଼ ସେହି ଖୋଲା ପ୍ରାନ୍ତରକୁ ଲାଗି ରହିଥିଲା । ଉପରକୁ ଏକ ଚଲା ବାଟ ପରି ପରିଷ୍କାର ବାଟ ପଡ଼ିଥିଲା । ସେମାନେ ଆଶ୍ୱସ୍ତ ହେଲେ, ଡିସୋଜା କହିଲେ ବୋଧହୁଏ ଜନପଦର ଖୁବ୍ ନିକଟରେ । ନଚେତ୍ ଏପରି ପରିଷ୍କାର ସ୍ଥାନ ମିଳିବ କେଉଁଠୁ ? ପୁଣି ପାହାଡ଼ ଉପରକୁ ଯାଇଥିବା ଏକ ସଫାସୁତୁରା ରାସ୍ତା ସେଠାରୁ ସ୍ପଷ୍ଟ ଦେଖାଯାଉଥିଲା । ବୋଧହୁଏ ପାହାଡ଼ ସେପଟରେ ଜନପଦ । ଆସନ୍ତା କାଲି ଆମର ଦୁଃଖ ଯିବ । ଆମେ ଗାଁରେ ପହଞ୍ଚିଯିବା ।

ମନକୁ ମନ ଏତକ କହି ଆଶ୍ୱାସନା ଦେଉଥିଲେ ଡିସୋଜା ସେହି ଆହତ ଯୁବକଙ୍କୁ । ସେମାନେ କଥା କହୁ କହୁ ଏତେ ପଥଶ୍ରାନ୍ତ ହୋଇଥିଲେ ଯେ ଆଖି ଗୁଡ଼ିକ ଆପଣା ଛାଏଁ ବୁଜି ହୋଇ ଯାଇଥିଲା । ସେମାନଙ୍କ ଦେହରୁ ବୋହୁଥିବା ଗମଗମ ଝାଳ ତାଙ୍କର ପିନ୍ଧା ବସନକୁ ଭିଜାଇ ଦେଇଥିଲା । ସେଦିନ ସେହି ପରିଷ୍କାର ସ୍ଥାନ ତାଙ୍କ ପାଇଁ ଆରାମଦାୟକ ତୁଳା ଶେଯ ବିଛଣାଠାରୁ ଅଧିକ ଆରାମ ଦାୟକ ଥିଲା । କେତେବେଳେ ଡିସୋଜାଙ୍କ ଆଖି ବୁଜି ହୋଇ ଯାଇଥିଲା ସେ ଜାଣିପାରି ନଥିଲେ । ତାଙ୍କ ନିକଟରେ ଯୁବକଟି ମୃତ ପ୍ରାୟ ପଡ଼ିରହିଥିଲା । ମଝିରେ ମଝିରେ ସେ ଅସ୍ପଷ୍ଟ ସ୍ୱରରେ ଚିତ୍କାର କରୁଥିଲା ।



# କାଳରାତ୍ରିର ରୋମାଞ୍ଚକର ଅନୁଭୂତି

ଏକ ବିରାଟ ଚିତ୍କାରରେ ଡିସୋଜାଙ୍କ ନିଦ ଭାଙ୍ଗିଗଲା । ଖୁବ୍ ଜୋରରେ ୧୦/୧୨ଟି ଚଡ଼ଚଡ଼ି ଗୋଟିଏ ସ୍ଥାନରେ ପଡ଼ିଲେ ଯେପରି ଶବ୍ଦ ହେବ, ଏହି ଶବ୍ଦ ତାଠାରୁ ବିକଟାଳ ଓ ଭୟଙ୍କର ଥିଲା । ସେ ଶବ୍ଦରେ ପୃଥିବୀ ଫାଟିଗଲା ପରି ଲାଗିଲା, ଆକାଶରୁ ସତେ ଯେପରି ଏକ ନକ୍ଷତ୍ର ଖସିପଡ଼ିଲା ପରି ଜଣାଗଲା । ଡିସୋଜା ଓ ଆହତ ଯୁବକଙ୍କ ଶରୀର ରକ୍ତିମ ଆଲୋକରେ ଉଦ୍‌ଭାସିତ ହେଉଥିଲା । ଆକାଶରେ ଏକ ଛୋଟ ନଡ଼ିଆ ଗଛ ଉଚ୍ଚତାରେ ଦୁଇଟି ରକ୍ତାକ୍ତ ଚକ୍ଷୁ ଦାଉ ଦାଉ ଜଳୁଥିଲା । ସେମାନଙ୍କ ନିକଟରେ ଏକ କ୍ଷୁଦ୍ର କଳାରଙ୍ଗର ଛୋଟ ପାହାଡ଼ ଠିଆ ହୋଇଥିଲା ପରି ଜଣାପଡୁଥିଲା । ଡିସୋଜାଙ୍କ ଶରୀରଠାରୁ ୧୫/୨୦ ଗଜ ଦୂରରେ ହାତୀ ଗୋଡ଼ ପରି ଚର୍ମଯୁକ୍ତ ଏକ ମୋଟା ପାଦ ମାଟି ଉପରେ ଲାଗି ରହିଥିଲା ଓ ସେଥିରେ ଥିବା ମଣିଷ ଗୋଡ଼ ମୋଟାର ଆଙ୍ଗୁଠିରେ କଳା ମୁନିଆଁ ନଖ ସବୁ ଲାଗି ରହିଥିଲା । ତାହା ଯେ ଏକ ଜୀବ ଏହା ଜାଣିବାକୁ ଡିସୋଜାଙ୍କୁ କିଛି ସମୟ ଲାଗିଥିଲା । ସେହି ବିରାଟକାୟ ରାକ୍ଷସଜୀବର ସବୁଠାରୁ ଭୟଙ୍କର ଥିଲା ତାର ଆଗ ଗୋଡ଼ ଓ ବିକୃତ ମୁଖମଣ୍ଡଳରେ ଝଲସୁଥିବା ମୁନିଆଁ ଧଳା ଧଳା ଦାନ୍ତ । ତାର ପାଟିର ଆକାର ପ୍ରାୟ ୧୦ ଫୁଟ ଆକ୍ରାନ୍ତର ଥିଲା । ଏପ୍ରକାର ବିରାଟଜୀବ ଯେ କି ପ୍ରକାର ପ୍ରାଣୀ କିମ୍ବା ରାକ୍ଷସ ଏହା ଜାଣିବା କଷ୍ଟକର ଥିଲା । ଡିସୋଜାଙ୍କ ଶରୀର ଜଡ଼ ପାଲଟି ସାରିଥିଲା । ଆଜି ଖୋଦ ଭଗବାନ ମଧ୍ୟ ତାଙ୍କୁ ଏହି କାଳାନ୍ତକ ପ୍ରାଣୀ ମୁଖରୁ ବଞ୍ଚାଇ ପାରିବେ ନାହିଁ । ତାଙ୍କ ରୋମମୂଳ ଟାଙ୍କୁରି ଉଠୁଥିଲା ଏବଂ ସେ ନିସ୍ତେଜ ହୋଇ ପଡ଼ିରହି ମୃତ୍ୟୁକୁ ଅପେକ୍ଷା କରିଥିଲେ ।

ହଠାତ୍ ସେହି ବିରାଟ ଜୀବ ପାଦପକାଇ ଆଗେଇ ଆସିଲା । ପାଟିଖୋଲି ସେ ବିକଟ ଚିତ୍କାର କଲା । ତାର ଚିତ୍କାର ଶତ ସିଂହର ଗର୍ଜନକୁ ଟପିଗଲା । କିଛି ସମୟ ପୂର୍ବରୁ ବଣ ଜୀବଜନ୍ତୁଙ୍କ ଶବ୍ଦରେ କୋଳାହଳମୟ ଜଙ୍ଗଲ ଏକବାରେ ନିସ୍ତବ୍ଧ ହୋଇଗଲା । ଏପରିକି ଝିଙ୍କାରୀର ଶବ୍ଦ ବି ଆଉ

ଶୁଭିଲା ନାହିଁ । ଏହି ଶବ୍ଦ ଶୁଣି ଯେ ଯୁଆଡ଼େ ଜୀବନ ବଞ୍ଚାଇବାକୁ ଆତ୍ମଗୋପନ କଲେ । ଏହି ବିରାଟକାୟ ରାକ୍ଷସ ଜୀବର ପାଦ ତଳେ ସେହି ଆହତ ଯୁବକଟି ନିସ୍ତେଜ ଭାବେ ଶୋଇ ରହିଥିଲା ।

ଏହି ଜୀବର ଦ୍ୱିତୀୟ ରଡ଼ିରେ ଡିସୋଜା କ୍ଷଣକପାଇଁ ସାହସ ବାନ୍ଧିଲେ ଏବଂ ଘୁଷୁରି ଘୁଷୁରି ପଛେଇବାକୁ ଚେଷ୍ଟା କଲେ । ସେ ଜୀବ ସେତେବେଳଯାଏ କେବଳ ବାରମ୍ବାର ବିକଟାଳ ଚିତ୍କାର କରୁଥିଲା । ବୋଧହୁଏ ମଣିଷକୁ ସେ ସର୍ବପ୍ରଥମ ଥର ପାଇଁ ଦେଖୁଥିଲା ଏବଂ ଏହାର ଗନ୍ଧ ପାଉଥିଲା । ତା ନାକରୁ ବାହାରୁଥିବା ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ମଧ୍ୟ ଏକପ୍ରକାର ଶବ୍ଦ ସୃଷ୍ଟି କରୁଥିଲା । ସେହି ବିକଟାଳ ଜୀବର ରାକ୍ଷସ ରୂପ ସତେ ଯେପରି କାଳାନ୍ତକ ଯମର ସ୍ୱରୂପ ପରି ମନେ ହେଉଥିଲା ।

ଝାଳରେ ଓଦା ହୋଇଥିବା ଶରୀରକୁ ଡିସୋଜା ଘୋଷାରି ଘୋଷାରି ସେହି ଜୀବଠାରୁ ଦୂରେଇ ଯିବାକୁ ଚେଷ୍ଟା କରୁଥିଲେ । ମାତ୍ର ସେହି ଯୁବକ ଅସହାୟ ଭାବେ ସେହିପରି ସେଠାରେ ପଡ଼ିରହିଥିଲା । ବୋଧହୁଏ ସେ ଏହି ଜୀବର ରୂପଦର୍ଶନ କରି ଅଚେତ ହୋଇଯାଇ ଥିଲା । ଏହି ଭୟଙ୍କର ରାକ୍ଷସଜୀବଠାରୁ ସେହି ଯୁବକକୁ କିପରି ରକ୍ଷା କରିବେ ତାହାହିଁ ଡିସୋଜା ଚିନ୍ତା କରୁଥିଲେ ।

ହଠାତ୍ ସେହି ଦାନବଜୀବ ପୁନର୍ବାର ଏକ ଚିତ୍କାର କଲା ଏବଂ ତାର ଆଗ ଗୋଡ଼ ସାହାଯ୍ୟରେ ସେହି ଆହତ ଯୁବକଙ୍କୁ ଫୁଲପରି ଟେକି ଧରିଲା । ଶୂନ୍ୟରେ ସେହି ଯୁବକଟି ଛଟପଟ ହେଉଥିଲା । ଦୀର୍ଘ ନିଶ୍ୱାସରେ ତାର ଶରୀର ଥରିଯାଉଥିଲା । ସେହି ରାକ୍ଷସ ଗୋଟିଏ ହାତରେ ଫୁଲପରି ସେହି ଯୁବକଙ୍କୁ ଧରି ଅନ୍ୟ ହାତ ଡିସୋଜାଙ୍କୁ ଉଠାଇ ନେବାକୁ ବଢ଼ାଇଲା । ଡିସୋଜା ଏ ପ୍ରକାର ହଠାତ୍ ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲେ । ସେ ଖୁବ୍ ଜୋରରେ ଘୁଞ୍ଚିଆସି ଏକ ବିରାଟ ବୃକ୍ଷ ପଛରେ ଲୁଚି ଗଲେ । ଏହା ଦେଖି ସେହି ଜୀବର ଚକ୍ଷୁରୁ ଅଗ୍ନି ଝରିଲା, ସେ ବାରମ୍ବାର ବିକଟାଳ ରଡ଼ିକରି ଚିତ୍କାର କରି ଆଗେଇଲା । ମାତ୍ର ଡିସୋଜା ହଠାତ୍ ପଛକୁ ଘୁଞ୍ଚି ଆସିବା ବେଳେ ଏକ ଖାଲୁଆ ସ୍ଥାନରେ ଖସିପଡ଼ିଲେ । ଏହା ତାଙ୍କ ପାଇଁ ଆଶୀର୍ବାଦ ପରି ଥିଲା । ସେହି ରାକ୍ଷସଜୀବ ବାରମ୍ବାର ସେହି ଅଞ୍ଚଳରେ ଘୂରିବୁଲିଲା । ବହୁ ଗଛର ଡାଳପତ୍ରକୁ ଭାଙ୍ଗି ଏପଟ ସେପଟକୁ ଫିଙ୍ଗିଲା ଏବଂ ବାରମ୍ବାର ବିକଟାଳ ଚିତ୍କାର କଲା । ତାରି ହାତରେ

ଏକ ଛୋଟ ଛଡ଼େଇ ପରି ବିଚରା ସେହି ହତଭାଗ୍ୟ ଯୁବକ ଓହଳି ରହିଥିଲା । ବୋଧହୁଏ ତା'ର କେତେବେଲୁ ମୃତ୍ୟୁ ହୋଇ ସାରିଥିଲା । ହଠାତ୍ ଡିସୋଜା ରହିଥିବା ଖାଲ ଉପରେ ସେହି ଜୀବର ପାଦ ଆସି ପଡ଼ିଲା । ତାହାର ପାଦର ଆକାର ଏତେ ବଡ଼ ଥିଲା ଯେ ଏହା ସଂପୂର୍ଣ୍ଣ ଗାତକୁ ଘୋଡ଼ାଇ ରଖିଥିଲା । ତା'ର ପାଦତଳେ ଯେ ଡିସୋଜା ରହିଛନ୍ତି ଏହା ଜାଣିବା ଏହି ଜୀବ ପକ୍ଷରେ ସମ୍ଭବ ହୋଇ ନଥିଲା ।

ପାଦତଳ ଗାତ ଭିତରେ ରହି ଡିସୋଜା କାତର ଭାବେ ଭଗବାନଙ୍କୁ ଡାକିବାବେଳେ ମୃତ୍ୟୁକୁ ଅପେକ୍ଷା କରିଥିଲେ । ଯଦି କୌଣସିମତେ ତା'ର ପାଦ ଚାପି ହୋଇଯାଏ ତେବେ ସେହି ନିର୍ଜନ ଦ୍ୱୀପର ଘଞ୍ଚ ଜଙ୍ଗଲ ଭିତରେ ତାଙ୍କର ଜୀବନ୍ତ ସମାଧି ନିଶ୍ଚିତ ଭାବେ ହୋଇଯିବ କିମ୍ବା କୌଣସିମତେ ଯଦି ସେ ରାକ୍ଷସଜୀବ ତାଙ୍କର ସନ୍ଧାନ ପାଏ ତେବେ ତା' ହାତରେ ତାଙ୍କର ସାଥୀ ଯୁବକଭଳି ଯେ ମୃତ୍ୟୁ ହେବ ଏଥିରେ ସନ୍ଦେହ ନାହିଁ । ଡିସୋଜା ସେହିପରି ନୀରବ ନିଶ୍ଚଳଭାବେ ପଡ଼ି ରହିଥିଲେ । କିଛି ସମୟ ଖୋଜାଖୋଜି ପରେ ସେହି ରାକ୍ଷସଜୀବ ବିରାଟ ରଡ଼ି ଛାଡ଼ି ଛୋଟ ପାହାଡ଼ ଆଡ଼କୁ ଆଗେଇଲା । ଜଙ୍ଗଲ ଭିତରେ ଯେଉଁ ରାସ୍ତା ପରିଷ୍କାର ହୋଇ ଜନପଦକୁ ପଡ଼ିଛି ବୋଲି ପୂର୍ବରୁ ଡିସୋଜାଙ୍କ ମନରେ ଭ୍ରମ ଧାରଣା ସୃଷ୍ଟି କରିଥିଲା ତାହା ଯେ ଏହି ରାକ୍ଷସଜୀବର ପାଦଚଲା ରାସ୍ତା ଏହା ଡିସୋଜା ଏବେ ଜାଣିପାରିଲେ ।

ତାଙ୍କ ଶରୀରରେ ଶତସିଂହର ବଳ କାହୁଁ ମାଡ଼ି ଆସିଲା । ସେହି ହତଭାଗ୍ୟ ଯୁବକର ଭବିଷ୍ୟତ କଥା ଭୁଲି ନିଜର ଜୀବନ ବଞ୍ଚାଇବାକୁ ଜୀବନ ବିକଳରେ ସେହି ଘଞ୍ଚ ଜଙ୍ଗଲ ଆଡ଼େ ଅମୁହାଁ ଦୌଡ଼ିବାକୁ ଲାଗିଲେ । ସେ କୁଆଡ଼େ ଯାଉଛନ୍ତି ସେ କଥା ଚିନ୍ତା କରିବାକୁ ତାଙ୍କ ପାଖରେ ସମୟ ନଥିଲା । ସେତେବେଳଯାଏ ସେହି ବିରାଟକାୟ ରାକ୍ଷସ ଜୀବର ପ୍ରଚଣ୍ଡ ବିକଟାଳ ଚିତ୍କାର ଶୁଭୁଥିଲା । କ୍ରମେ ରାତ୍ରି ପାହି ଆସୁଥିଲା । ସିନ୍ଦୁରା ଫାଟିବା ବେଳ ଓ ଶରୀର ରକ୍ତାକ୍ତ ହୋଇ ସାରିଥିଲା । ତାଙ୍କ ବାମ କାନ୍ଧରୁ ରକ୍ତର ଧାର ଛୁଟୁଥିଲା । ପାଦରୁ ଯୋତା ଗୋଟିଏ କେଉଁଠି ପଡ଼ିଯାଇଥିଲା ଏବଂ ସମସ୍ତ ପୋଷାକ ଛିଡ଼ିଯାଇଥିଲା । ନିକଟରେ ସାଗରର ପ୍ରଚଣ୍ଡ ଲହରୀମାଳାର ଶବ୍ଦ ଶୁଭିଲା । ସେତେବେଳେ କୁଆର ନଥିଲା । ସାଗର ଜଳ ଉତ୍‌ଫୁଲ୍ଲିତ ନଥିବାରୁ ବାଲୁକା ଜଙ୍ଗଲଠାରୁ କିଛି ବାଟଯାଏ ଲମ୍ବି ରହିଥିଲା । ଜଙ୍ଗଲ ମଧ୍ୟରେ ଅନେକ ହିଂସ୍ର ଜନ୍ତୁ ପୂର୍ଣ୍ଣଥିଲେ ।

ଦୂରରୁ ପାହାନ୍ତା ପହରକୁ ସେମାନଙ୍କର ବିକଟାଳ ରଡ଼ି ଶୁଭୁଥିଲା । ସେହି ରାକ୍ଷସ ଜୀବର ରଡ଼ି ଏବେ ଆଉ ନ ଶୁଭିଲେ ବି ହିଂସ୍ର ଜନ୍ତୁଙ୍କ ଭୟ ଡିସୋଜାଙ୍କ ମନରେ ଭୟ ସଞ୍ଚାର କରୁଥିଲା । ସାକ୍ଷାତ ଯମ ମୁହଁରୁ ସେ ଯେଉଁପରି ଅବସ୍ଥାରେ ଫେରିଲେ ତାହା ଚିନ୍ତାକରିବାକୁ ତାଙ୍କର ଶକ୍ତି ନଥିଲା । ସେ ସାଗର ବେଳାରେ ପହଁଞ୍ଚି ପୁଣି ସେହି ବିପଦଶଙ୍କୁଳ ସାଗର ବକ୍ଷକୁ ଚାଲିଯିବାକୁ ଠିକ୍ କଲେ । ହାତରେ ସମୟ ନାହିଁ । ଥରେ ମାଂସର ସ୍ୱାଦ ଚାଖିଥିବା ସେ ରାକ୍ଷସଜୀବ ତାଙ୍କୁ ଯେ ଖୋଜିବାକୁ ପୁଣି ନ ଆସିବ ତାହା ଅସମ୍ଭବ ନୁହେଁ । ତେଣୁ ଯେତେ ଶୀଘ୍ର ସାଗର ବକ୍ଷକୁ ଚାଲିଯିବା ହିଁ ଭଲ । ରାତ୍ରି ପାହାନ୍ତା ହୋଇ ଆସିଥିଲା । ପୁଣି ନିକଟ ଜଙ୍ଗଲରେ ହଠାତ୍ ସେହି ବିରାଟକାୟ ଜୀବର ଉପସ୍ଥିତି ବିଷୟରେ ଡିସୋଜା ଜାଣିପାରିଲେ । କାରଣ ପାହାନ୍ତା ପହରରେ ବଣ ମଧ୍ୟରେ ଶବ୍ଦକରି କୋଳାହଳ କରୁଥିବା ଜୀବଜନ୍ତୁଙ୍କ ଶବ୍ଦ ହଠାତ୍ ବନ୍ଦ ହୋଇଥିଲା, ଏବଂ ସମସ୍ତେ ଯେପରି ନିରବ, ନିଶ୍ଚଳ ହୋଇଗଲେ । ଏହା ହିଁ ସେହି ରାକ୍ଷସଜୀବ ଆସିବାର ପୂର୍ବ ସୂଚନା । ତାକୁ ଦେଖିବା ମାତ୍ରେ ଜଙ୍ଗଲର କି କ୍ଷୁଦ୍ର, କି ବିରାଟ ଜନ୍ତୁ ନିଜର ଜୀବନ ବଞ୍ଚାଇବାକୁ ଚେଷ୍ଟାକରି ତୁନି ହୋଇ ବସିପଡ଼ନ୍ତି । ସେ ହିଁ ଏହି ଜଙ୍ଗଲର ସମ୍ରାଟ ।

ଡିସୋଜାଙ୍କ ଭାବନା ସତ୍ୟଥିଲା । ଖୁବ୍ ନିକଟରେ ପୁଣି ସେହି ଭୟଙ୍କର ରଡ଼ି ଶୁଭିଲା । ସେହି ରଡ଼ିର ଶବ୍ଦରେ ଡିସୋଜା ଚେତା ହରାଇବା ପରି ଅନୁଭବ କଲେ ମାତ୍ର ଧୈର୍ଯ୍ୟଧରି ସେ ତାଙ୍କର ବୋଟଟିକୁ ଖୋଜିବାକୁ ଚେଷ୍ଟା କରୁଥିଲେ । ଭଗବାନଙ୍କ ଅଶେଷ ଦୟାରୁ ତାଙ୍କର ବୋଟଟି କିଛି ଦୂରରେ ଗଛରେ ବନ୍ଧା ହୋଇ ରହିଥିଲା । କିନ୍ତୁ ଜୁଆର ନଥିବାରୁ ବୋଟଟି ଶୁଖିଲାରେ ପଡ଼ିଥିଲା । ଡିସୋଜାଙ୍କ ନିକଟରେ ସମୟ ନଥିଲା, ବିକଟାଳ ରଡ଼ି କ୍ରମେ ନିକଟରୁ ନିକଟତର ହେଉଥିଲା ଓ ଏଥିସହିତ ସେହି ପ୍ରାଣୀର ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ଡିସୋଜା ଠିକ୍ ଭାବେ ବାରି ପାରୁଥିଲେ । ସେ ବୋଟଟିକୁ ଗଛ ଦେହରୁ ଖୋଲିଦେଇ ନିଜର ଶରୀରରେ ଥିବା ସମସ୍ତ ଶକ୍ତି ଲଗାଇ ତାକୁ କାଦୁଅ ଉପରେ ପେଲି ପେଲି ଜଳସ୍ତର ଯାଏ ଆଣିବାକୁ ଚେଷ୍ଟା କରିଥିଲେ । ବହୁ କଷ୍ଟରେ ସେ ଏଥିରେ ସଫଳ ହୋଇଥିଲେ । ତାଙ୍କ ଶରୀରରେ ସେତେବେଳେ ଶତସିଂହର ବଳ କାହୁଁ ମାଡ଼ି ଆସିଲା । ଏକାକୀ ସେ ବୋଟଟିକୁ ପେଲି ପେଲି ସମୁଦ୍ର ଜଳ ଯାଏ ନେଇ ଆସି ଏହା ଉପରକୁ ଡେଇଁ ପଡ଼ିଥିଲେ ଏବଂ ହାତରେ ଧରିଥିବା ଏକ କାଠରେ ଠେଲି ଠେଲି ଗଭୀର ସମୁଦ୍ର ଭିତରକୁ ଚାଲି ଆସିବାକୁ ଚେଷ୍ଟା କରିଥିଲେ ।

ତାଙ୍କର ନୌକା ତାଙ୍କୁ ଧରି ସାଗରର ନୀଳ ଜଳଧିରେ ବିଚରଣ କରିବାକୁ ଲାଗିଲା । ନୌକାଟିର ଅନେକ ଅଂଶରେ ରବର ଥିବାରୁ ଏହା ଅପେକ୍ଷାକୃତ ହାଲୁକା ଥିଲା ।

ସ୍ଥଳଭାଗ ଦେଖିବାର ସୁଖ, ସୁନେଲି ସ୍ୱପ୍ନ ତାଙ୍କର କୁଆଡ଼େ ଉଭେଇ ଗଲା । ଜଳଭାଗ ଠାରୁ ସେ ପହଁଞ୍ଚିବା ସ୍ଥଳଭାଗ ଯେ କେତେ ଭୟଙ୍କର ତାହା ଡିସୋଜା ଚିନ୍ତା କରୁଥିଲେ । ମୃତ୍ୟୁ ତାଙ୍କ ନିକଟକୁ କେତେ ଥର ଆସି ଫେରି ଯାଇଥିଲେ ମଧ ଏବେ ମୃତ୍ୟୁ ଯେ ନିଶ୍ଚିତ ସେଥିରେ ସେ ଦୃଢ଼ ଥିଲେ । ଫର୍ଚ୍ଚା ହୋଇ ସାରିଥିଲା । ଉପକୂଳରୁ ସେହି ରାକ୍ଷସ ପ୍ରାଣୀର ବିକଟାଳ ରଡ଼ି ଏବେ ବି ଶୁଭୁଥିଲା । ତାଙ୍କର ଶରୀର ନିସ୍ତେଜ ହୋଇ ସାରିଥିଲା । ବୋଟ ଉପରେ ବସି ସେହି ହତଭାଗ୍ୟ ଯୁବକ କଥା ଭାବୁଥିଲେ । ଗତ କାଲି ସେ ଏହି ବୋଟ ଉପରେ ଶୋଇରହି ଚିତ୍କାର କରୁଥିଲା । ସ୍ତ୍ରୀ ପୁତ୍ରଙ୍କୁ ହରାଇ ନିଜର ଜୀବନ ବଞ୍ଚାଇ ଆସି ମଧ ସେ ଯେପରି ସବୁ ସମୟରେ ମୃତ୍ୟୁର ରୂପ ଦର୍ଶନ କରୁଥିଲା । ମାତ୍ର ତା'ର ଯେଉଁ ପରିସ୍ଥିତିରେ ଅସହାୟ ଭାବରେ ସେହି ରାକ୍ଷସ ଜୀବ ହାତରେ ବିଭତ୍ସ ଭାବେ ମୃତ୍ୟୁ ଘଟିଲା ତାହା ଚିନ୍ତା କରିବା ବେଳେ ତାଙ୍କ ରୋମ ମୂଳ ଟାଙ୍କୁରି ଉଠୁଥିଲା । ସେହି ଯୁବକ ଏବେ ମୃତ ନା ଜୀବିତ ? ଏହିକଥା ସେ ଚିନ୍ତା କରୁଥିଲେ । ସେହି ଦାନବଜୀବ ତାକୁ ଯେ ଖଣ୍ଡ ଖଣ୍ଡ କରି ଖାଇ ସାରିଥିବ ଏ ବିଷୟରେ ସେ ନିଃସନ୍ଦେହ ଥିଲେ । ତା'ର ସ୍ମୃତିରେ ସେ ଭଗବାନଙ୍କୁ ପ୍ରାର୍ଥନା କଲେ ଏବଂ ନିଜେ ଯେ ଖୁବ୍ ଶୀଘ୍ର ସାଗର ବକ୍ଷରେ ତା'ରି ଦଶା ଭୋଗିବାକୁ ଯାଉଛନ୍ତି ଏକଥା ଚିନ୍ତାକରି ଦୁଃଖରେ ଭାଙ୍ଗି ପଡ଼ିଲେ । ହୁଏତ ସେହି ରାକ୍ଷସଜୀବ ତାଙ୍କୁ ଧରି ନେଇଥିଲେ ଭଲ ହୋଇଥାନ୍ତା । ମାତ୍ର ସେ କାପୁରୁଷ ଭଳି ଅସହାୟ ଭାବେ ବନ୍ଧୁ ଯୁବକଟିକୁ ଛାଡ଼ି ପଳାୟନ କଲେ କାହିଁକି ? ଏ ପ୍ରକାର ବିରାଟକାୟ ହିଂସ୍ର ଜୀବ ଯେ ପୃଥିବୀରେ ଅଛନ୍ତି ଏ ବିଷୟରେ ସେ କେବେ କଳ୍ପନା ବି କରି ନଥିଲେ । ନିଶ୍ଚିତ ଭାବେ ଏହି ଜୀବ ବାସ କରୁଥିବା ଦ୍ୱୀପ ଏକ ଜନ-ମାନବ ଶୂନ୍ୟ ଦ୍ୱୀପ ହୋଇଥିବ ନଚେତ୍ ଏ ପ୍ରକାର ପ୍ରାଣୀ ଥିବାର ପୃଥିବୀବାସୀ ନ ଜାଣିଲେ କିପରି ?

ଏହିପରି ବୋଟର ନିମ୍ନ ଦେଶରେ ଶୋଇ ରହି ଭାବୁ ଭାବୁ ତାଙ୍କର ନିସ୍ତେଜ ଚକ୍ଷୁ ବୁଜି ହୋଇ ଯାଇଥିଲା ଏବଂ ସେ ବୋଟ ଉପରେ ପଡ଼ିରହି ଭାସି ଭାସି ଯାଉଥିଲେ ।



# ମୃତ୍ୟୁ ଆଉ ଦୁଇ ମିନିଟ ବାକୀ

ଡିସୋଜାଙ୍କ କାନ ଓ ନାକରେ ପାଣି ପଶିବା ପରେ ତାଙ୍କ ନିଦ ଭାଙ୍ଗିଯାଇଥିଲା । ତାଙ୍କ ଶରୀରର ଖଣ୍ଡିଆ ଖାବରା ଅଂଶରେ ଭୀଷଣ ବେଦନା ସେ ଅନୁଭବ କରୁଥିଲେ । ସେ ଓଦା ହୋଇ ଉଠି ଦେଖିଲେ ଯେ ସେ ବୋଟ ଭିତରେ ଏକ ପ୍ରକାର ଉବୁଟୁବୁ ହେଉଛନ୍ତି । ଘଟଣା କ'ଣ ବୁଝିବାକୁ ତାଙ୍କୁ ବେଶୀ ସମୟ ଲାଗିଲା ନାହିଁ । ବୋଟର ପାର୍ଶ୍ୱ ଦେଶରୁ ଏକ ଫାଟ ଦେଇ ଜଳ ଭିତରକୁ ପ୍ରବେଶ କରୁଥିଲା ଏ କଥା ଡିସୋଜା ଲକ୍ଷ୍ୟ କରି ନ ଥିଲେ । ମାତ୍ର ବୋଟର ପାର୍ଶ୍ୱ ଅଂଶରେ ଏ ଫାଟ ସୃଷ୍ଟି ହେଲା କିପରି ? ସେ ମନେ ପକାଇଲେ ଯେତେବେଳେ ସେମାନେ ସ୍ଥଳଭାଗରେ ପହଁଞ୍ଚିଥିଲେ ସେତେବେଳେ ହଠାତ୍ ବୋଟଟି ଏକ ବିରାଟକାୟ ଗଛ ଦେହରେ ପିଟି ହୋଇ ଯାଇଥିଲା ଓ ସେତିକି ବେଳୁ ହିଁ ଏହି ଫାଟ ସୃଷ୍ଟି ହୋଇଥିଲା । ମାତ୍ର ଉଦ୍‌ବିଗ୍ନ ଓ ଘୋର ବିସାଦ ମଧ୍ୟରେ ଏ କଥା ଲକ୍ଷ୍ୟ କରିବା ତାଙ୍କ ପକ୍ଷେ ପୂର୍ବରୁ ସମ୍ଭବ ହୋଇ ନାହିଁ ।

ଡିସୋଜା ଏଥର ନିଶ୍ଚିତ ହୋଇଗଲେ ଯେ ଏଥର ତାଙ୍କୁ ଗଭୀର ସାଗର ବକ୍ଷରୁ ବଞ୍ଚାଇବାକୁ ଆଉ କେହି ସକ୍ଷମ ହେବେ ନାହିଁ । ମୃତ୍ୟୁ ଖୁବ୍ ଶୀଘ୍ର ଆସୁଛି । ହୁଏତ ଆଜିର କାଳରାତ୍ରିରେ ସେ ସାଗର ସାର୍କମାନଙ୍କର ଭୋଜନର ପାତ୍ର ହେବେ । ଏ କଥା ଚିନ୍ତା କରି ତାଙ୍କ ଚକ୍ଷୁରୁ ଦୁଇଧାର ଲୋତକ ଗଡ଼ି ଆସିଲା । ତଥାପି ମୃତ୍ୟୁ ପୂର୍ବରୁ ଶେଷ ଚେଷ୍ଟା କରିଲେ କ୍ଷତି କ'ଣ ? ସେ ଦୁଇ ହାତର ପାପୁଲିକୁ ଯୋଡ଼ି ପାଣି ବାହାରକୁ ପକାଇଲେ । କିଛି ସମୟ ମଧ୍ୟରେ ବୋଟ ଭିତରୁ କିଛି ପାଣି କମିଗଲା । ମାତ୍ର ସେହି ଫାଟରୁ କ୍ରମାଗତ ପାଣି ଝରି ଚାଲିଥିଲା । ସେହି ଫାଟକୁ ବନ୍ଦ କରିବାକୁ କୌଣସି ଉପାୟ ତାଙ୍କ ନିକଟରେ ନଥିଲା । ସେ ଶରୀରରେ ଶେଷ ଶକ୍ତିଥିବା ଯାଏ ବାହାରକୁ ପାଣି ଫିଙ୍ଗି ଚାଲିଥିଲେ । ବିଶ୍ରାମର ସମୟ ନାହିଁ । ବିଶ୍ରାମ ମାନେ ମୃତ୍ୟୁ । ମାତ୍ର ତିନି ଦିନ ଭୋକ ଉପାସରେ ରହିଥିବା ଅବଶ ଶରୀରକୁ ନେଇ କେତେ ସମୟ ପାଇଁ କ୍ରମାଗତ ଭାବେ ସେ ପରିଶ୍ରମ କରିପାରିବେ ? ଦ୍ୱିତୀୟରେ ବଞ୍ଚିବାର କୌଣସି

ସମ୍ଭାବନା ନାହିଁ । ଚାରିଆଡ଼େ ପ୍ରଶାନ୍ତ ନୀଳ ସାଗର । ଏହାର ଶେଷ କେଉଁଠି ଜଣା ନାହିଁ । ସାହାରା ମରୁଭୂମିରୁ ଏକ ସ୍ୱତନ୍ତ୍ର ମରୁବାଲିକୁ ଖୋଜି ପାଇବା ଯାହା, ବିଶାଳ ନୀଳ ସାଗର ଭିତରୁ ବିନ୍ଦୁପରି ତାଙ୍କର ନୌକାକୁ ଠାବକରି ପାଇ ତାଙ୍କର ଜୀବନ ବଞ୍ଚାଇବା ମଧ ସେହିପରି । ତେବେ କିଏ କାହିଁ ତାଙ୍କର ଖୋଜ ଖବର ନେବ । ଦୁର୍ଘଟଣା ସ୍ଥଳରେ ସମସ୍ତେ ମରିଥିବା ଖବର ହୁଏତ ପ୍ରଚାରିତ ହୋଇ ସାରିଥିବ । ଏବେ ଆଉ କେହି କୌଣସି ଯାତ୍ରୀ ବିଷୟରେ ଖୋଜ ଖବର କରୁ ନଥିବେ ।



ଏହି ବିଷୟରେ ଚିନ୍ତା କରି ସେ ଅଧିକରୁ ଅଧିକ ହତାଶ ହୋଇ ପଡୁଥିଲେ । ଦୁର୍ବଳ ହାତ ତାଙ୍କର ଆଉ ଚାଲିବାକୁ ସକ୍ଷମ ନଥିଲା । ଡିସୋଜାଙ୍କ ଶରୀର ଖୁବ୍ ଶୀଘ୍ର ସେହି ଭଙ୍ଗା ନୌକା ଉପରେ ପଡ଼ି ରହି ନିସ୍ତେଜ ହୋଇ-ଆସୁଥିଲା । ମୃତ୍ୟୁ ନିକଟରୁ ନିକଟତର ହେଉଥିଲା । ଜଳସ୍ତର ଝରି ଝରି ବୋଟଟିକୁ ପୂରଣ କରି ଚାଲିଥିଲା । ଡିସୋଜା ବିକଳଭାବେ ବୋଟ ଉପରେ ପଡ଼ିରହି ମୃତ୍ୟୁକୁ ଅପେକ୍ଷା କରିଥିଲେ । ତାଙ୍କର ହାତ ଗୋଡ଼ ହଲାଇବାକୁ ମଧ ଶକ୍ତି ନଥିଲା । ସେ ବେଳକୁ ବେଳ ଅଧିକ ନିସ୍ତେଜ ହୋଇ ପଡୁଥିଲେ ।



# ଏମ୍.ଭି.ଭିକ୍ଟୋରୀଆ

ଏମ୍.ଭି.ଭିକ୍ଟୋରୀଆ – ଇଂଲଣ୍ଡର ମହାମାନ୍ୟ ପୂର୍ବତନ ମହାରାଣୀଙ୍କ ନାମରେ ନାମିତ ବ୍ରିଟିଶ ସିପିଙ୍ଗ କର୍ପୋରେସନ୍‌ର ଏକ ବିରାଟକାୟ ଜଳଜାହାଜ । ଏହି ଜାହାଜର ବିଶାଳତା ଯେପରି ସୁଦୂରପ୍ରସାରୀ, ଏହାର ସୌଖୀନ ସାଜସଜ୍ଜା ମଧ୍ୟ ତଦୋଧିକ । ଜାହାଜର କ୍ୟାପଟେନ ୬୫ ବର୍ଷୀୟ ସ୍କଟ । ଗୋରା ଙ୍କେ ତକ ଚେହେରା । ମୁଣ୍ଡର ଶୀରାଗୁଡ଼ିକ ସ୍ପଷ୍ଟ ବାରି ହୋଇ ପଡ଼ିଲାଣି । ମାତ୍ର ଯୁବକ ସୁଲଭ ଚାଲିଚଳଣ ଯାଇନାହିଁ । ପାହାନ୍ତିଆରୁ ଉଠି ବ୍ୟାୟାମ ତାଙ୍କର ଏକ ନିତ୍ୟ କାର୍ଯ୍ୟ । ହାଫପ୍ୟାଣ୍ଟ ଓ ଗଞ୍ଜି ପିନ୍ଧି ଜପିଙ୍ଗ କରୁଥିବା ବେଳେ ତାଙ୍କ ସହିତ ଯୁବକମାନେ ବି ଅନେକ ସମୟରେ ହାରିଯାଇଥାନ୍ତି । ୧୫ ବର୍ଷ ବୟସରେ ସେ ଜାହାଜର ଜଣେ ସାଧାରଣ କର୍ମଚାରୀ ଭାବେ ଯୋଗ ଦେଇଥିଲେ । ଦୁଇ ଦୁଇଟା ବିଶ୍ୱ ଯୁଦ୍ଧର ସେ ମୂକସାକ୍ଷୀ । ସାଗର ତାଙ୍କର ଅତି ପ୍ରିୟ । ଜୀବନର ତିନି ଚତୁର୍ଥାଂଶ ସମୟ ତାଙ୍କର ସାଗର ମଧ୍ୟରେ ହିଁ ଅତିବାହିତ ହୋଇଛି । ତାଙ୍କର ବିଚକ୍ଷଣ ବୁଦ୍ଧି ଓ ପରିଚାଳନା ଦକ୍ଷତା ଯୋଗୁଁ ସେ ଏତେବଡ଼ ଜାହାଜର କ୍ୟାପଟେନ ହେବାର ସୌଭାଗ୍ୟ ଲାଭ କରିଛନ୍ତି ।

ଫିଲପାଇନସ୍ ନିକଟରେ ଘଟିଥିବା ମର୍ମନ୍ତୁଦ ଦୁଇ ଜାହାଜ ଦୁର୍ଘଟଣା ପରେ ଏମ୍.ଭି.ଭିକ୍ଟୋରୀଆ ଓ ଆଉ ୧୧ଟି ଜାହାଜକୁ ଉଦ୍ଧାର କାର୍ଯ୍ୟରେ ନିୟୋଜିତ କରାଯାଇଥିଲା । ସବୁ ଜାହାଜ ତା ପରଦିନଠାରୁ ଆସି ଦୁର୍ଘଟଣା ସ୍ଥଳରେ ପହଁଞ୍ଚି ଥିଲେ ସୁଦ୍ଧା ସାଢ଼େ ତିନି ହଜାର ଯାତ୍ରୀଙ୍କ ମଧ୍ୟରୁ ମାତ୍ର ୧୧ଜଣ ଯାତ୍ରୀଙ୍କ ଅର୍ଦ୍ଧଦଗ୍ଧ ଶରୀର ଉଦ୍ଧାର କରିବାକୁ ସକ୍ଷମ ହୋଇଥିଲେ । ସାଗରର ସ୍ଥିର ଜଳରାଶି କ୍ଷୁଦ୍ର ଲହରୀ ଭାଙ୍ଗି ସତେ ଯେପରି ତା ବକ୍ଷରେ କୌଣସି ବଡ଼ ଦୁର୍ଘଟଣା ଘଟିନାହିଁ ଏହା ହିଁ ପ୍ରତିପାଦିତ କରୁଥିଲା । ଯେଉଁ ମାନେ ବୁଡ଼ି ମଲେ ବା ଅର୍ଦ୍ଧଦଗ୍ଧ ହୋଇ ଆହତ ହେଲେ, ସେମାନଙ୍କୁ ଏହି ସାଗରରେ ବାସ

କରୁଥିବା ହଜାର ହଜାର ବିରାଟକାୟ ସାର୍କ ମାଛ ଖାଇଗଲେ । ଏ ଅଞ୍ଚଳରେ ଏମାନଙ୍କ ସଂଖ୍ୟା ଏତେ ଅଧିକ ଯେ ଗୋଟିଏ ରାତ୍ରିରେ ବିକଟାଳ ସାର୍କଙ୍କ କବଳରୁ ଏହି ହତଭାଗ୍ୟ ମଣିଷଙ୍କୁ ରକ୍ଷା କରିବା ସମ୍ଭବ ହେଲା ନାହିଁ ।

ଏତେ ବଡ଼ ବିରାଟକାୟ ଜାହାଜ ହେଲେ ମଧ୍ୟ ଏହା ଭିତରେ ଗହଳି ଚହଳି ଲାଗି ରହିଥିଲା । ଉଦ୍ଧାର କାର୍ଯ୍ୟ କରିବା ପାଇଁ ନିୟୋଜିତ ବହୁ ଅତ୍ୟାଧୁନିକ ଯନ୍ତ୍ର, ର୍‌ୟାଡ଼ର, କମ୍ପ୍ୟୁଟର ଠାରୁ ଯନ୍ତ୍ରମାନବ ରୋବର୍ଟ, ସାଗର ମଧ୍ୟକୁ ଯାଇ ଅନାୟାସରେ ଏହା ଗର୍ଭର ସ୍ଥିରଚିତ୍ର ଆଣି ପାରୁଥିବା ଜଳଗୋଳକ ଦ୍ରୁତଗାମୀ ଟର୍ପୋଡ଼ୋ, ମୋଟ ଲଞ୍ଚ, ବହୁ ବୁଡ଼ାଳୀ, ସନ୍ତରଣକାରୀ ସର୍ବୋପରି ବ୍ରିଟିଶ ନୌସୈନ୍ୟ ବାହିନୀର ବହୁ କମାଣ୍ଡିଂ ଅଫିସର ଓ ସେନା ଏହି ଜାହାଜର ରହିଥିଲେ ଓ ଉଦ୍ଧାର କାର୍ଯ୍ୟ ପରିଚାଳନା କରୁଥିଲେ । ବିଗତ ଦୁଇଦିନ ଯାକ ଚେଷ୍ଟାକରି ସେମାନେ ଜଣେ ଅଧାପୋଡ଼ା ଲୋକକୁ ଉଦ୍ଧାର କରିଥିଲେ । ଜଳନ୍ତା ତେଲ ଦେହରେ ପୋଡ଼ିହୋଇ ତା'ର ଶରୀରର ଆଗପଟ କିଛି ନଥିଲା । କଥା କହିବା ମଧ୍ୟ ତା ପକ୍ଷରେ ସମ୍ଭବପର ନଥିଲା । ଜାହାଜ ଉପରକୁ ଉଠାଇଆଣି ବହୁ ସମୟ ତା'ର ଚିକିତ୍ସା କରାଯାଇଥିଲେ ମଧ୍ୟ କୌଣସି ସୁଫଳ ମିଳିନଥିଲା । ଗତ ରାତ୍ରିରେ ସେହି ଲୋକ ମୃତ୍ୟୁ ବରଣ କରିଥିଲା ।

କର୍ମଚାରୀଙ୍କ ମନରେ ଉଦ୍‌ବିଗ୍ନତା ଭରି ରହିଥିଲା । ସେମାନେ କ'ଣ ଜଣେ କେହି ଦୁର୍ଘଟଣାର ମୂକସାକ୍ଷୀ ଯାତ୍ରୀକୁ ଉଦ୍ଧାର କରି ପାରିବେ ନାହିଁ । ଯାହାଠାରୁ ଅନ୍ତତଃ ଦୁର୍ଘଟଣା ବେଳର କରୁଣ କାହାଣୀ ଓ ବିଶଦ ବିବରଣୀ ମିଳିପାରିବ । ସାରା ପୃଥିବୀବାସୀଙ୍କ ଆଖି ଏହି ବିଭୀଷିକାମୟ ଦୁର୍ଘଟଣା ଉପରେ ରହିଥିଲା । ସେତେବେଳଯାଏ ଦୁର୍ଘଟଣାର କାରଣ ଓ ସମୟ ବିଷୟରେ କୌଣସି ତଥ୍ୟ ମିଳି ନଥିଲା ।

ସେଦିନ ଥିଲା ଡିସେମ୍ବର ମାସ ୨୫ ତାରିଖ । ପବିତ୍ର ବଡ଼ଦିନ । ପ୍ରଭୁ ଜୀଶୁଙ୍କ ଜନ୍ମ ଦିବସ । ସାଗରର ବୁକୁ ଚିରି ସୂର୍ଯ୍ୟ ଉଇଁଲା ସୁନେଲି ଆଭା ନେଇ । ଜାହାଜ କର୍ମଚାରୀମାନେ ଆନନ୍ଦ ଉଲ୍ଲାସରେ ବଡ଼ଦିନ ପର୍ବ ପାଳନ ପାଇଁ ପ୍ରସ୍ତୁତ ହେଉଥିଲେ । ଜାହାଜ କିଚିନରେ ବିରାଟକାୟ ବଡ଼ଦିନ କେକ୍

ତିଆରି ଚାଲିଥିଲା । ନୃତ୍ୟ, ଗୀତ, ସହିତ ସମଗ୍ର ଜାହାଜଟି କୋଳାହଳମୟ ଓ ଆନନ୍ଦମୁଖର ଥିଲା ।

ମାତ୍ର ଜାହାଜର କ୍ୟାପ୍‌ଟେନ୍ ରୁମରେ ଅନ୍ୟମନସ୍କ ଭାବେ ବୁଲୁଥିଲେ ସ୍କଟ । ମନରେ ତାଙ୍କର ସରସତା ନାହିଁ, କ'ଣ ଉତ୍ତରଦେବେ ସେମାନେ ବିଶ୍ୱବାସୀଙ୍କୁ । ଏତେବଡ଼ ଜଣେ ନାବିକ ହୋଇ ଏହି ମର୍ମନ୍ତୁଦ ଦୁର୍ଘଟଣାର ଜଣେ ହେଲେ ମୂକସାକ୍ଷୀଙ୍କୁ ଅନ୍ୟମାନଙ୍କ ପରି ସେ ମଧ୍ୟ ଉଦ୍ଧାର କରିପାରିଲେ ନାହିଁ, ଏହାଠାରୁ ବଳୀ ଲଜ୍ଜାକର ଘଟଣା କ'ଣ ଅଛି ? ହାତରେ ଶକ୍ତିଶାଳୀ ବାଇନାକୁଲାର ଧରି ସେ ସାଗର ବକ୍ଷର ସୌନ୍ଦର୍ଯ୍ୟକୁ କଳନା କରୁଥିଲେ । ଦଳ ଦଳ ବିରାଟକାୟ ସାର୍କ ମାଛ ସବୁ ତାଙ୍କର ଦୃଷ୍ଟି ଗୋଚର ହେଉଥିଲା । ତାଙ୍କର ଜାହାଜ ରହିଥିବା ସ୍ଥାନରୁ ମାତ୍ର କେତେ ଶହ କିଲୋମିଟର ଦୂରରେ ଦୁର୍ଘଟଣା ଘଟିଥିବା ସ୍ଥଳ । ୩୦୦୦ ମଣିଷକୁ ଖାଇ ଭୁରି ଭୋଜନ କରିଥିବା ସାର୍କ ପ୍ରଧାନ ଏହି ଅଞ୍ଚଳର ଛୋଟ ବଡ଼ ବହୁ ସାର୍କ ଓ ଅନ୍ୟାନ୍ୟ ବହୁ ସମୁଦ୍ର ଜୀବ ତାଙ୍କ ବାଇନାକୁଲାର ଭିତରକୁ ଆସି ଯାଉଥିଲେ । କିଛି ଦୂରରେ ଆକାଶକୁ ଉଠୁଥିବା ଉଡ଼ନ୍ତା ମାଛ । ଏସବୁ ବକ୍ଷରେ ଯାତ୍ରା କଲାବେଳେ ସେ ଏପରି ବହୁ ଆଶ୍ଚର୍ଯ୍ୟଜନକ ଘଟଣାବଳୀ ଦେଖିଛନ୍ତି । ସାଗର ସମ୍ରାଟ ନୀଳତିମି ସହିତ ବହୁ ଥର ତାଙ୍କ ଜାହାଜର ମୁହାଁମୁହିଁ ହୋଇଛି ଏବଂ ବହୁ ଲୋମହର୍ଷଣକାରୀ ଅଭିଜ୍ଞତା ତାଙ୍କ ମାନସପଟରେ ଉଜ୍ଜୀବିତ ହୋଇ ରହିଛି ।

ବାଇନାକୁଲାର ତାଙ୍କର ବୁଲୁଥିବା ଅବସ୍ଥାରେ ଗୋଟିଏ ସ୍ଥାନରେ ସ୍ଥିର ହୋଇଗଲା । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଦଳେ ସାର୍କଙ୍କର ଲୀଳା ଖେଳା ଦେଖି ସେ ଚକିତ ହୋଇଗଲେ । ସେଠାରେ ନିଶ୍ଚିତ ଭାବେ କିଛି ଘଟିଛି । ବହୁ ଦିନ ସମୁଦ୍ର ଯାତ୍ରା ଓ ସାଗରଜୀବଙ୍କ ସହ ଦେଖାସାକ୍ଷାତ ଫଳରେ ସେ ସେମାନଙ୍କର ଆଚାର ବ୍ୟବହାର ସହିତ ଏକପ୍ରକାର ଅଭ୍ୟସ୍ତ ହୋଇ ପଡ଼ିଥିଲେ । ପ୍ରଚୁର ଖାଦ୍ୟ ଖାଇଥିଲେ କିମ୍ବା ଖାଦ୍ୟ ପାଇବାର ଆଶଙ୍କା ଥିଲେ ଏହି ସାର୍କମାନେ ଯେଉଁଭଳି ଆନନ୍ଦମତ୍ତ ହୋଇଥାନ୍ତି, ସେହି ଅଞ୍ଚଳର ସାର୍କମାନେ ସେଭଳି ଆନନ୍ଦମତ୍ତ ଥିଲେ । ସ୍କଟଙ୍କ ବାଇନାକୁଲାରର ମୁହଁ କିଛି ବାଟ ବୁଲିଯାଇ ହଠାତ ସ୍ଥିର ହୋଇଗଲା । ଅସ୍ପଷ୍ଟ ହେଲେ ବି ଏକ କ୍ଷୁଦ୍ର ନୌକା ଜଳମଗ୍ନ ଅବସ୍ଥାରେ

ଥିଲା ଏବଂ ତାହା ଉପରେ କେହି ଜଣେ ମୃତବତ ପଡ଼ିରହିଥିଲେ । ସେ ମୃତ କି ଜୀବିତ ତାହା ଜାଣିବା ଅସମ୍ଭବ ଥିଲା । ସେହି ଅଧାବୁଡ଼ା ନୌକାକୁ ଘେରି ଯାଇଥିଲେ ଶହ ଶହ ସାର୍କ । ଆଉ ହୁଏତ କେତେ ମିନିଟ୍ ଭିତରେ ସେହି ହତଭାଗ୍ୟ ସାର୍କଙ୍କର ଆହାର ବନିବା ନିଶ୍ଚିତ । କେତେକ ସାର୍କ ସେହି ଦାନବକୁ ଖୁମ୍ପିବାକୁ ଆରମ୍ଭ କରି ଦେଇଥିଲେ । ଆଉ ସମୟ ନାହିଁ ।

ସ୍କଟଙ୍କ ପରି ଜଣେ ବିଚକ୍ଷଣ, ଅଭିଜ୍ଞ କ୍ୟାପ୍‌ଟେନଙ୍କ ମୁଣ୍ଡରେ କିଛି ପଶିଲା ନାହିଁ । ମାତ୍ର ୨/୩ ମିନିଟ୍ ଭିତରେ ସାର୍କଙ୍କ କବଳରୁ ସେହି ବ୍ୟକ୍ତିକୁ ଉଦ୍ଧାର କରିବାକୁ ହେବ – ସେ ମୃତ ହେଉ କିମ୍ବା ଜୀବିତ । ମାତ୍ର ଏହା ଆଦୌ



ସମ୍ଭବ ନୁହେଁ । ଏଠାରୁ ଲଞ୍ଚନେଇ ଯାଇ ଘଟଣା ସ୍ଥଳରେ ପହଁଞ୍ଚିବାକୁ ଖୁବ୍ କମ୍‌ରେ ୧୫ ମିନିଟ୍ ସମୟ ଲାଗିବ । ସେତେବେଳକୁ ହୁଏତ ସବୁ ଶେଷ ହୋଇ ସାରିଥିବ ।

ସ୍କଟଙ୍କ ଅଜାଣତରେ ତାଙ୍କ ହାତ ଜାହାଜର ବିପଦକାଳୀନ ଘଣ୍ଟା ସୁଇଚ୍‌କୁ ଚାଲିଯାଇଥିଲା । ବିକଟ ଚିତ୍କାର କରି ଜାହାଜର ବିପଦକାଳୀନ ସାଇରନ ବାଜି ଉଠିଲା । ଖ୍ରୀଷ୍ଟମାସ ଦିନ ପାଳନ ପାଇଁ ହର୍ଷୋତ୍‌ଫୁଲ୍ଲ ଲୋକେ, ଜାହାଜ କର୍ମଚାରୀ ହଠାତ୍ ଅଜଣା ଆତଙ୍କରେ ଭୟଭୀତ ହୋଇ ପଡ଼ିଲେ । ସୈନ୍ୟମାନେ ସଙ୍ଗେ ସଙ୍ଗେ ପ୍ରସ୍ତୁତ । ଜାହାଜର କର୍ମଚାରୀ ଯିଏ ଯାହା କରୁଥିଲା ସବୁ କାମଛାଡ଼ି ପ୍ରସ୍ତୁତ ହୋଇ ଡେକ ଉପରକୁ ଆସିଗଲେ । କ୍ୟାପଟେନ ତତ୍‌କ୍ଷଣାତ ସେ ଦେଖିଥିବା ଘଟଣାବଳୀ ସମସ୍ତଙ୍କ ଆଗରେ ବର୍ଣ୍ଣନା କଲେ । ହାତରେ ସମୟ ନଥିଲା । କ୍ୟାପଟେନ୍‌ଙ୍କ ନିର୍ଦ୍ଦେଶରେ ଏକ କମାଣ ଅଣାଯାଇ ଜାହାଜର ଡେକ ଉପରେ ରଖାଗଲା । ଏହା ଭିତରେ ଶକ୍ତିଶାଳୀ ବାରୁଦ ଭର୍ତ୍ତି କରାଗଲା । ତାଙ୍କ ନିର୍ଦ୍ଦେଶ ଓ ଯୋଜନା ଠିକ୍ ଥିଲା । ଘଟଣା ସ୍ଥଳର କିଛି ଦୂରକୁ କମାଣର ଗୋଳା ନିକ୍ଷେପ କରି ଭୟଙ୍କର ସାର୍କମାନଙ୍କୁ ସେଠାରୁ ହଟାଇଦେବା ଥିଲା କ୍ୟାପଟେନଙ୍କର ଯୋଜନା । ତତ୍‌କ୍ଷଣାତ୍ ତାହାହିଁ ହୋଇଗଲା ମାତ୍ର ଏଥିରେ ବି ବିପଦ ଥିଲା । ଯଦି ଗୋଳାଟି ନୌକାର ନିକଟରେ ପଡ଼େ ତେବେ ନୌକା ସହିତ ସେହି ଲୋକର ଚିହ୍ନବର୍ଣ୍ଣ ରହିବ ନାହିଁ । ସ୍କଟଙ୍କ ନିର୍ଦ୍ଦେଶରେ କେତେକ କର୍ମଚାରୀ ଏକ ଟର୍ପେଡ୍ରୋ (କ୍ଷିପ୍ର ଗତିରେ ଯାଉଥିବା ଜୀବନରକ୍ଷାକାରୀ ବୋଟ)କୁ ଜାହାଜରୁ ସାଗର ବକ୍ଷକୁ ଓହ୍ଲାଉଥିଲେ । ସବୁ ଠିକ୍ କରାଯାଇ ଗୋଳା ନିକ୍ଷେପ କରାଗଲା । ଗୋଳାଟି ଅପେକ୍ଷାକୃତ କମ୍ ଶକ୍ତିଶାଳୀ ଥିଲା ଏବଂ ଏହା ନୌକାର ୨୦୦ ଫୁଟ ପୂର୍ବରୁ ସାଗର ବକ୍ଷରେ ପଡ଼ି ବିରାଟ ଶବ୍ଦ ସୃଷ୍ଟି କଲା । ସେହି ଅଜଣା ଆତଙ୍କମୟ ଶବ୍ଦ ଶୁଣି ନିକଟସ୍ଥ ସାର୍କମାନେ ଭୟରେ ପଳାୟନ କଲେ । କେତେକ ମରିଗଲେ ଓ କ୍ଷତବିକ୍ଷତ ହେଲେ । ଗୋଳା ଫୁଟିବା ପରେ ପରେ ଟର୍ପେଡ୍ରୋ କ୍ଷୀପ୍ର ଗତିରେ ଘଟଣା ସ୍ଥଳକୁ ତାର ଯାତ୍ରାରମ୍ଭ କଲା ।

ଗୋଳା ଫୁଟିବା ଦ୍ୱାରା ସାଗର ବକ୍ଷରେ ସ୍ଥିର ଜଳରାଶିରେ ଉଚ୍ଚ ଲହରୀମାଳା ସୃଷ୍ଟି ହେଲା ଏବଂ ଏହା ଖୁବ୍‌ଶୀଘ୍ର ଅଧାବୁଡ଼ା ହୋଇ ରହିଥିବା ନୌକା ଉପରକୁ ମାଡ଼ିଗଲା । ମାତ୍ର ସେହି ସମୟ ଭିତରେ ଟର୍ପୋଡ୍ରୋ ପ୍ରାୟ ସେଠାରେ ପହଞ୍ଚି ଯାଇଥିଲା । ନୌକାଟି ବୁଡ଼ିବାକୁ ଯାଉଥିଲା ।

ସେତେବେଳଯାଏ ଡିସୋଜା ନୌକା ଉପରେ ଚେତାଶୂନ୍ୟ ହୋଇ ପଡ଼ିଥିଲେ । ତାଙ୍କର ଗୋଡ଼ଠାରୁ ଅଣ୍ଟାଯାଏ ପାଣିରେ ବୁଡ଼ିଯାଇଥିଲା । ବିସ୍ଫୋରଣ ଯୋଗୁଁ ସୃଷ୍ଟି ହୋଇଥିବା ଲହରୀ ତାଙ୍କର ପିଠି ଓ ବେକଯାଏ ମାଡ଼ିଆସି ତାଙ୍କ ଶରୀର ଅତିକ୍ରମ କରିଚାଲିଯାଉଥିଲା ।

ଟର୍ପେଡ଼ୋରେ ଥିଲେ କେତେ ଜଣ ଦକ୍ଷ କର୍ମଚାରୀ, ବୁଡ଼ାଳୀ ଓ ସାଗର ବିଶାରଦ । ଆଉ ମିନିଟିଏ ଦୁଇମିନିଟି ଭିତରେ ସବୁ ଶେଷ ହୋଇଯିବ । ଟର୍ପେଡ଼ୋକୁ କିଛି ଦୂରରେ ରଖି ଦୁଇ ଜଣ ବୁଡ଼ାଳି ରବର ଟ୍ୟୁବ ଓ ଜୀବନ ରକ୍ଷାକାରୀ କୃତ୍ରିମ ଶେଜ ଧରି ଧୀରେ ଧୀରେ ଆଗେଇଲେ ଘଟଣାସ୍ଥଳକୁ । ସେତେବେଳକୁ ସାଗର ଜଳ ଡିସୋଜାଙ୍କ ମୁଖମଣ୍ଡଳ ସ୍ପର୍ଶ କଲାଣି ।ସେମାନେ ଉଠାଇ ଆଣିଲେ ଡିସୋଜାଙ୍କୁ କୃତ୍ରିମରବର ଶେଯ ଉପରକୁ ଓ ରବର ଶେଯଟି ଟର୍ପେଡ଼ୋ ଦ୍ୱାରା ଦଉଡ଼ିରେ ସଂଯୁକ୍ତ ହୋଇଥିଲା । ଆସ୍ତେ ଆସ୍ତେ ଏହା ଆସି ଟର୍ପେଡ଼ୋ ନିକଟରେ ପହଁଞ୍ଚିଲା । ସମସ୍ତ ଆଶା, ଆଶଙ୍କାକୁ ଦୂରକରି କର୍ମଚାରୀମାନେ ଟେକିନେଲେ ଡିସୋଜାଙ୍କୁ ଟର୍ପେଡ଼ୋ ଉପରକୁ । ତାଙ୍କର ଶରୀର ଶୀତ ହୋଇ ଆସୁଥିଲା, ମୁଖ ମଣ୍ଡଳ ଶେତା ପଡ଼ିଯାଇଥିଲା । ଗତ ରାତ୍ରିରେ ଜଙ୍ଗଲ ଭିତରେ ଦୌଡ଼ି ଜୀବନ ରକ୍ଷାକରିବା ସମୟରେ ପାଦ ଓ ଶରୀରରେ ସୃଷ୍ଟି ହୋଇଥିବା କ୍ଷତ ସମୁଦ୍ରର ଲୁଣିଆ ଜଳ ସ୍ପର୍ଶରେ ଫୁଲି ଯାଇଥିଲା । ମାତ୍ର ତାଙ୍କ ଶରୀରରେ ଜୀବନ ଥିଲା । ତାଙ୍କୁ ତତ୍‌କ୍ଷଣାତ୍ ଜାହାଜ ଉପରକୁ ନିଆଗଲା ।

କ୍ୟାପଟେନ୍ ସ୍କଟଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ଦିଶିଲା । ବହୁ ବିଶେଷଜ୍ଞ ଡାକ୍ତର ଚିକିତ୍ସାରେ ଲାଗିଗଲେ । ସେ ନିଶ୍ଚୟ ଦୁର୍ଘଟଣା ଗ୍ରସ୍ତ ଜାହାଜର ଜଣେ ହତଭାଗ୍ୟ ଯାତ୍ରୀ । କାରଣ୍ ବୁଡ଼ିଯାଉଥିବା ନୌକା ହିଁ ଜାହାଜର ଜୀବନତରୀ । ଏହାକୁ ମଧ ଉଦ୍ଧାର କରି ଅଣାଯାଇଥିଲା । ଯାହା ହେଲେ ବି ତାଙ୍କୁ ବଞ୍ଚାଇବାକୁ ହେବ । ତାଙ୍କ ଜୀବନ ସହିତ ସ୍କଟଙ୍କର ସମ୍ମାନର ପ୍ରଶ୍ନ ଯେ ଜଡ଼ିତ !



# ପୁନର୍ଜନ୍ମ ପରେ

ବାଳ ସୂର୍ଯ୍ୟର କିରଣ ଡିସୋଜା ଶୋଇଥିବା କୋଠରୀର ସ୍ୱଚ୍ଛ କାଚ ଭେଦ କରି ତାଙ୍କ ମୁଖମଣ୍ଡଳ ଉପରେ ପଡୁଥିଲା । କ୍ରମେ ସେ ସୁସ୍ଥ ହେଉଥିଲେ । ଦୁର୍ବଳତା ତଥାପି ଶରୀରରେ ଥିଲା ଓ କ୍ଷତବିକ୍ଷତ ଶରୀର ସାରା ଔଷଧର ପଟି ଗୁଡ଼ା ହୋଇଥିଲା । କ୍ୟାପଟେନ ସ୍କଟ ପ୍ରତ୍ୟକ୍ଷ ଭାବେ ତାଙ୍କର ସେବା ଶୁଶ୍ରୂଷା ବିଷୟ ଦେଖୁଥିଲେ ।

ଆଖି ଖୋଲିଲେ ଡିସୋଜା । ତାଙ୍କ ପାଦ ତଳେ ଏକ ଚୌକି ଉପରେ ବସିଥିଲେ କ୍ୟାପଟେନ । କିପରି ଅଛନ୍ତି ମିଷ୍ଟର । ଆମେ ଆପଣଙ୍କ ପାଇଁ ଗର୍ବିତ । ଆପଣଙ୍କୁ ଯେ ସାଗର ବକ୍ଷରୁ ବହୁ କଷ୍ଟରେ ବଞ୍ଚାଇପାରିଛୁ ଏହା ହିଁ ଆମ ପାଇଁ ଯଥେଷ୍ଟ । ଦୁର୍ଘଟଣାଗ୍ରସ୍ତ ଜାହାଜ ବିଷୟରେ ତଥ୍ୟ ମିଳୁ କି ନାହିଁ ।

ଡିସୋଜା କିନ୍ତୁ ବିଗତ ଅତୀତର ସ୍ମୃତିକୁ ମନେ ପକାଉଥିଲେ । ବିଗତ ଦିନ ଓ କାଳରାତ୍ରିରେ ସେ କିପ୍ରକାର ବିଭୀଷିକାର ସମ୍ମୁଖୀନ ହୋଇ ଆସିଛନ୍ତି ସେ କଥା ଚିନ୍ତା କଲାବେଳେ ସେ ପୁଣି ଥରେ ଚେତାଶୂନ୍ୟ ହେବାପରି ଅନୁଭବ କରୁଥିଲେ । ତାଙ୍କ ପାଟିରୁ ସ୍ୱତଃ ବାହାରି ଆସିଥିଲା ହାୟ ! ହତଭାଗ୍ୟ ଯୁବକ । ତା'ର କ'ଣ ହେଲା । ତା' ପାଇଁସେ କେତେ କଷ୍ଟ ସ୍ୱୀକାର କରି ନାହାଁନ୍ତି । ମାତ୍ର ଶେଷରେ ତାକୁ ସେ ଭୟଙ୍କର ରାକ୍ଷସଜୀବ ମୁହଁରୁ ରକ୍ଷା କରି ପାରିଲେ ନାହିଁ । ପ୍ରତି ମୁହୂର୍ତ୍ତରେ ମୃତ୍ୟୁର ଚିତ୍ର ଦେଖୁ ଦେଖୁ ସେହିଁ କ୍ୟାପଟେନ୍‌ଙ୍କ ଦୟାରୁ ଜୀବନ ଦାନ ପାଇଲେ । କ୍ୟାପଟେନ୍ ଓ ତାଙ୍କ କର୍ମଚାରୀଙ୍କୁ କୃତଜ୍ଞତା ଜଣାଇବାକୁ ତାଙ୍କ ମୁହଁରେ ଭାଷା ନ ଥିଲା ।

× × ×

ଅନବରତ ସେବା ଶୁଶ୍ରୂଷା ପରେ ସେ ସୁସ୍ଥ ହୋଇ ଉଠିଲେ । ସେଦିନ ଅପରାହ୍ନରେ ସବୁ ଜାହାଜ କର୍ମଚାରୀଙ୍କ ଆଗରେ ସେ ତାଙ୍କର ଅଭିଜ୍ଞତା ଓ

ମୃତ୍ୟୁ ସହିତ ସଂଗ୍ରାମ ବିଷୟରେ କହିଲେ । ସମସ୍ତେ ତାଙ୍କର ସାହାସୀପଣିଆ ଓ କାଳରାତ୍ରିର ଆତଙ୍କମୟ ଘଟଣା ଶୁଣୁଥିଲେ । ବିରାଟକାୟ ରାକ୍ଷସ ଜୀବନରୁ ପୂର୍ବରୁ କେହି ଦେଖି ନ ଥିଲେ କିମ୍ବା ସେ ବିଷୟରେ ଶୁଣି ନ ଥିଲେ ।

ଆହତ ଯୁବକଙ୍କୁ ସେହି ରାକ୍ଷସଜୀବ ନେଇଗଲା ପରେ ତା'ର ଭବିଷ୍ୟତ କ'ଣ ହେଲା ସେ ବିଷୟରେ ଜାଣିବାକୁ ସମସ୍ତେ ଉଦ୍‌ବିଗ୍ନ ଥିଲେ । ସେହି ହତଭାଗ୍ୟ ମୃତ୍ୟୁ ବରଣ କରିଥିବା ନିଶ୍ଚିତ – ମାତ୍ର ଯଦି ବଞ୍ଚିଥାଏ ? କ୍ୟାପଟେନ୍ କହିଲେ ଆମକୁ ପ୍ରଥମେ ସେହି ଯୁବକର ସନ୍ଧାନ ନେବାକୁ ହେବ । ଏକାକୀ ଡିସୋଜା ଆହତ ଯୁବକର ଜୀବନ ରକ୍ଷା ପାଇଁଯେଉଁ ସଂଗ୍ରାମ କରିଛନ୍ତି ଏବଂ ଶେଷ ମୁହୂର୍ତ୍ତଯାଏ ଆପ୍ରାଣ ଚେଷ୍ଟା କରିଛନ୍ତି ସେଥିରୁ ଆମେ ସମସ୍ତେ ଶିକ୍ଷା ଲାଭ କରି ଆଗେଇବା ଉଚିତ୍ ।

ଆମ ହାତରେ ଆଧୁନିକ ଅସ୍ତ୍ର ଶସ୍ତ୍ର, ଗୋଳାବାରୁଦ, ଅତ୍ୟାଧୁନିକ ର୍‍ୟାଡ଼ାର, ସମସ୍ତ ଜିନିଷ ରଖିଥିବା ବେଳେ ଆମେ କ'ଣ ସେହି ଯୁବକ ବିଷୟରେ ସନ୍ଧାନ ନେବା ଉଚିତ୍ ନୁହେଁ ? ତେଣୁ ଫେରିବା ପୂର୍ବରୁ ପ୍ରଥମେ ସେହି ଦ୍ୱୀପକୁ ଯାଇ ଯୁବକୁ ବିଷୟରେ ଅନୁସନ୍ଧାନ କରାଯିବା ଆବଶ୍ୟକ । ମାତ୍ର ସେହି ବିଶାଳକାୟ ପ୍ରାଣୀକଥା ଶୁଣି ଅନେକ ଏହାକୁ ବିଶ୍ୱାସ କରୁ ନଥିଲେ । କେତେକ ଭିତରେ ଭିତରେ ଥଟ୍ଟାକରି ଡିସୋଜାଙ୍କ ମତିଭ୍ରମ ହୋଇଛି ବୋଲି କହୁଥିଲେ ।

ଡ୍ରଇଁରୁମ୍‌ରୁ ଏକ ବିରାଟକାୟ ମାନଚିତ୍ର ନେଇ ଆସିଲେ କ୍ୟାପଟେନ୍ । ତାଙ୍କ ସହିତ କେତେକ ପୁରୁଖା ସାମରିକ କମାଣ୍ଡର ଓ ଡିସୋଜା । ତନ୍ନ ତନ୍ନ କରି ସେ ପରୀକ୍ଷା କଲେ ମାନଚିତ୍ରକୁ । ଫିଲପାଇନ୍‌ସର ହଜାର ହଜାର ଦ୍ୱୀପ ଭିତରେ ସେ ଅନୁସନ୍ଧାନରେ ବୁଡ଼ିଯାଇଥିଲେ । ତାଙ୍କର ଅବସ୍ଥିତି ଓ ଗୋଟିଏ ଦିନରେ ଡିସୋଜା ଅତିକ୍ରମ କରିଥିବା ସାଗର ପଥକୁ ବିଶ୍ଳେଷଣ କରି ସେ ନିକଟବର୍ତ୍ତୀ ଦ୍ୱୀପର ସନ୍ଧାନ ନେଉଥିଲେ । ହଜାର ହଜାର ଖଣ୍ଡ ବିଖଣ୍ଡିତ ସ୍ଥଳଭାଗ ଭିତରେ ଆଖି ବୁଲାଉବୁଲାଉ ତାଙ୍କର ଦୃଷ୍ଟି କାମୋଡ଼ୋ ଦ୍ୱୀପଠାରେ ହିଁ ସ୍ଥିର ହୋଇଯାଇଥିଲା । କାମୋଡ଼ୋ ତାଙ୍କ ଅବସ୍ଥିତି ସହିତ ଓ ଡିସୋଜା ଅତିକ୍ରମ କରିଥିବା ପଥର ନିକଟତମ ଥିଲା । ଏହା ସେମାନେ ଲଙ୍ଗର ପକାଇଥିବା ସ୍ଥାନରୁ ୨୫୦ କିଲୋମିଟର ଦକ୍ଷିଣକୁ ରହିଥିଲା ।

କାମୋଡ଼ୋ ବ୍ୟତୀତ ଅନ୍ୟ କୌଣସି ଦ୍ୱୀପ ସେମାନଙ୍କର ଏତେ ନିକଟରେ ନଥିଲା ଯେଉଁଠାରୁ କି ଡିସୋଜା ଗୋଟିଏ ଦିନରେ ସାଗର ପଥ ଅତିକ୍ରମ କରି ଆସିପାରିବେ । କାମୋଡ଼ୋ ଦ୍ୱୀପଠାରୁ ସମୁଦ୍ର ସ୍ରୋତ ପ୍ରଖର ଥିବାରୁ ସେଠାରୁ ଗୋଟିଏ ଦିନ ଭିତରେ ଏତେବାଟ ଡିସୋଜାଙ୍କ ବୋଟ ଉତ୍ତର ଦିଗକୁ ଭାସି ଆସିଥିଲା ।

କାମୋଡ଼ୋ ଦ୍ୱୀପ କିନ୍ତୁ ଏକ ପରିତ୍ୟକ୍ତ ଦ୍ୱୀପ । ଛୋଟ ବଡ଼ ପାହାଡ଼ ପର୍ବତ ଓ ହିଂସ୍ର ଜନ୍ତୁରେ ଏହା ଭରପୂର । ମଣିଷ ବାସୋପଯୋଗୀ ନୁହେଁ । ପୂର୍ବେ କୁଆଡ଼େ ଅଳ୍ପ କେତେଜଣ ଆଦିବାସୀ ଏଠାରେ ରହୁଥିଲେ ମାତ୍ର ସେମାନଙ୍କ ସଂଖ୍ୟା କମି କମି ବିଲୁପ୍ତ ହୋଇଗଲେ । ଏହାପରେ ଯେତେବେଳେ ଯିଏ ଏହି ଦ୍ୱୀପକୁ ଆସିଛି ସେ ଆଉ ଫେରିନାହିଁ । ହିଂସ୍ର ଜୀବଜନ୍ତୁରେ ଭରପୂର ଏହି ଦ୍ୱୀପକୁ ଯାତ୍ରା କରିବା ବିପଦ ଶଙ୍କୁଳ ଓ ପାଦେ ପାଦେ ବିପଦର ସମ୍ଭାବନା । ତେଣୁଏହାକୁ ଫିଲିପାଇନ୍‌ସ ବାସୀ ଏକ ପରିତ୍ୟକ୍ତ ଦ୍ୱୀପଭାବେ ବିବେଚନା କରିଥାନ୍ତି ଓ ଏଠାକୁ କେହି ଯାଆନ୍ତି ନାହିଁ । ଏକ କ୍ଷୁଦ୍ର ପାହାଡ଼ର ଚିତ୍ର ଓ ତା ପଛକୁ ଥିବା ବିରାଟକାୟ ପର୍ବତ ଶିଖରକୁ ଦେଖି ଡିସୋଜା ନିଜେ ଅଙ୍କେ ଲିଭାଇଥିବା କଥା ସ୍ମରଣ କରୁଥିଲେ । ବୋଧହୁଏ ଏହି ଛୋଟ ପାହାଡ଼ ନିକଟରେ ତାଙ୍କର ସେହି ପିଶାଚଜୀବ ସହିତ ସାକ୍ଷାତ ହୋଇଥିଲା ଆଉ ବିରାଟ ପର୍ବତ ଶ୍ରେଣୀ ପଛରୁ ସେ ସେଦିନ ସୂର୍ଯ୍ୟାସ୍ତ ଦେଖିଥିଲେ ।



# କାମୋଡ଼ୋ ଅଭିମୁଖେ ଯାତ୍ରା

ଡିସେମ୍ବର ୩୦ ତାରିଖ । ଆଜି ହିଁ କାମୋଡ଼ୋ ଦ୍ୱୀପ ଅଭିମୁଖେ ଯାତ୍ରା ଆରମ୍ଭ ହେବ । ଥରେ ସେହି ବିରାଟକାୟ ମୃତ୍ୟୁର ଅନ୍ୟନାମ ରାକ୍ଷସ ମୁହଁରୁ ବର୍ତ୍ତି ଆସିଥିବା ଡିସୋଜାଙ୍କୁ ସୈନ୍ୟସାମନ୍ତ ସହ ତା' ସମ୍ମୁଖକୁଯିବାକୁ ହେବ । ତାଙ୍କର ହତଭାଗ୍ୟ ସେହି ସାଥୀ ଯୁବକଟିକୁ ଉଦ୍ଧାର କରିବାକୁ କିଛିଦିନ ପୂର୍ବେ ସେ ଏକୁଟିଆ ନିରସ୍ତ୍ର ଭାବରେ ସମ୍ମୁଖୀନ ହୋଇଥିଲେ ସେହି ରାକ୍ଷସ ଜୀବର । ମାତ୍ର ଏବେ ତାଙ୍କର ସହିତ ଅଛନ୍ତି ବିଚକ୍ଷଣ ଧୀ-ସମ୍ପନ୍ନ କ୍ୟାପଟେନ୍ ସ୍କଟ, ଯୁଦ୍ଧ ବିଶାରଦ ବହୁ କମାଣ୍ଡର, ସୈନ୍ୟବାହିନୀ ଆଉ ବହୁ ଅତ୍ୟାଧୁନିକ ଯୁଦ୍ଧାସ୍ତ୍ର । ସେହି ବିରାଟକାୟ ଜୀବ ହାତରେ ଧରା ଦେଇଥିବା ଆହତ ଯୁବକର ଉଦ୍ଧାର ହିଁ ବର୍ତ୍ତମାନ ସମସ୍ତଙ୍କ ପାଇଁ ପ୍ରଥମ କାର୍ଯ୍ୟ । ଯେତେହେଲେ ବି ଡିସୋଜା ମଧ୍ୟ ଜଣେ ପୂର୍ବତନ ସାମରିକ କର୍ମଚାରୀ । ଏବେ ଅବସର ପ୍ରାପ୍ତ ହେଲେ ସୁଦ୍ଧା ଦ୍ୱିତୀୟ ବିଶ୍ୱଯୁଦ୍ଧର ମୂକସାକ୍ଷୀ ସେ ନିଜେ । ଜାପାନ ଉପସାଗର ଯୁଦ୍ଧବେଳେ ପ୍ରତ୍ୟକ୍ଷ ଭାବେ ସେ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ ।

ପ୍ରସ୍ତୁତି ପର୍ବ ସମସ୍ତ ସମାପ୍ତ । ବେତାର ଦ୍ୱାରା ସେମାନଙ୍କର କାର୍ଯ୍ୟକ୍ରମ ଜଣାଇ ଦେଲେ ମାନିଲାସ୍ଥିତ ମୁଖ୍ୟ କାର୍ଯ୍ୟାଳୟକୁ କ୍ୟାପଟେନ । କିନ୍ତୁ ଉଦ୍ଧାର ପ୍ରାପ୍ତ ଡିସୋଜାଙ୍କ ବିଷୟରେ ତଥ୍ୟ ଗୋପନ ରଖିଲେ ଏବଂ ସାଗର ବକ୍ଷରେ ସେ ଅନୁସନ୍ଧାନ କରି ଚାଲିଛନ୍ତି ବୋଲି ଜଣାଇ ଦେଲେ । ଶେଷରେ ସେ ବିଶ୍ୱବାସୀଙ୍କୁ ଡୋନାପାଚ ଜାହାଜ ଦୁର୍ଘଟଣାର ପ୍ରତ୍ୟକ୍ଷ ଅନୁଭୂତି ସଙ୍ଗେ ଡିସୋଜାଙ୍କୁ ଲୋକଲୋଚନକୁ ଆଣି କୃତିତ୍ୱ ଅର୍ଜନ କରିବା ଥିଲା କ୍ୟାପଟେନ୍‌ଙ୍କ ଲକ୍ଷ୍ୟ । ଏପରିକି ସେମାନେ ଏକ ପରିତ୍ୟକ୍ତ ଦ୍ୱୀପର ଏକ ରାକ୍ଷସଜୀବ ବା ଡ୍ରାଗନ ସହିତ ମୁହାଁମୁହିଁ ହେବାକୁ ଯାଉଛନ୍ତି ବୋଲି ମଧ୍ୟ ମୁଖ୍ୟ କେନ୍ଦ୍ରକୁ ଜଣାଇଲେ ନାହିଁ । କାରଣ କେତେକ ହୁଏତ ଏ ପ୍ରକାର ଏକ ଜୀବର ଅବସ୍ଥିତି ବିଷୟରେ ସନ୍ଦେହ ପ୍ରକାଶ କରି ଏ କଥାକୁ ହସରେ ଉଡାଇ ଦେଇ ପାରନ୍ତି ।

ନିଜେ ନିଜର ଦାୟିତ୍ୱରେ ଆଗେଇ ଯିବା ହେଉଛି କ୍ୟାପଟେନ ସ୍କଟଙ୍କର ଲକ୍ଷ୍ୟ । ସାରା ଜୀବନ ସାଗର ବକ୍ଷର ଅସରନ୍ତି ଜଳ ଭିତରେହିଁ ସେ କଟାଇଲେ । ସାଗର ହିଁ ତାଙ୍କର ସବୁଠାରୁ ପ୍ରିୟ ବସ୍ତୁ । ଛୁଟି କଟାଇବାକୁ ଘରକୁ ଗଲେ ବି ସେ ଅନେକ ସମୟରେ ସାଗର କୂଳକୁ ଆସି ତା'ର ଅପାଶୋରା ଦୃଶ୍ୟ ଦେଖିବାକୁ ଭୁଲନ୍ତି ନାହିଁ । ସାଗର ଭିତରେ ଥିବା ଅଧିକାଂଶ ଜୀବ, ମାଛ, କୀଟପତଙ୍ଗଙ୍କୁ ସେ ଭଲ ଭାବରେ ଚିହ୍ନିଛନ୍ତି । ସେ କହନ୍ତି ସାଗର ହିଁ ସବୁ ସୌନ୍ଦର୍ଯ୍ୟର ଗନ୍ତାଘର । ହୀରା ଲୀଳା ଠାରୁ ଆରମ୍ଭ କରି କୋଟି କୋଟି ବିଭିନ୍ନ ଆକୃତିର ଜଳଜୀବଙ୍କ କ୍ରୀଡ଼ାଭୂମି ଏହି ରତ୍ନଗର୍ଭର ତୁଳନା ନାହିଁ । ସେ ସାଗରର ସ୍ଥିର ଜଳରାଶିର କମନୀୟତା ଦେଖି ମୁଗ୍ଧ ହୋଇଛନ୍ତି ପୁଣି ସାଗର ବକ୍ଷର କରାଳ ଭୀମ ରୂପରେ ପଡ଼ି ଜୀବନକୁ ବିପନ୍ନ କରିବା ଅବସ୍ଥାକୁ ଆସିଛନ୍ତି ମାତ୍ର କେତେବେଳେ ସେ ପଛେଇ ଯାଇ ନାହାଁନ୍ତି । ନିଜର ଅସମ୍ଭବ ଧୀଶକ୍ତି, ତ୍ୱରିତ ବିଚାରବୁଦ୍ଧି ଓ କାର୍ଯ୍ୟଦକ୍ଷତା ବଳରେ ଆଜିଯାଏ ସାଗର ବକ୍ଷରେ ସେ କୌଣସି ପ୍ରକାର ଦୁର୍ଘଟଣାର ସମ୍ମୁଖୀନ ହୋଇ ନାହାଁନ୍ତି । ତାଙ୍କ କାର୍ଯ୍ୟର ତାରିଫ ସ୍ୱରୂପ ବହୁ ପଦକ ସେ ବିଶ୍ୱର ବହୁ ସାମୁଦ୍ରିକ ଅନୁଷ୍ଠାନ ଓ ସରକାରଙ୍କଠାରୁ ପାଇଛନ୍ତି ଏବଂ କର୍ତ୍ତବ୍ୟକ୍ଷେତ୍ରରେ ଆଗେଇ ଚାଲିଛନ୍ତି ।

ଆଜି ହେଉଛି ତାଙ୍କ ଜୀବନର ଅନ୍ୟ ଏକ ବଡ଼ ପରୀକ୍ଷାର ଦିନ । ସାଗର ଭିତରେ ରକ୍ଷା କରିବେ ଏକ ମୂଲ୍ୟବାନ ହତଭାଗ୍ୟ ଯୁବକର ଜୀବନ ଓ ସମ୍ମୁଖୀନ ହେବେ ଏକ ବିରାଟକାୟ ରାକ୍ଷସ ଡ୍ରାଗନ ସହିତ । ସବୁ ପ୍ରକାର ଅସମ୍ଭବ ଓ କଷ୍ଟକର କାମ ଭିତରକୁ ଆଗେଇ ଯାଇ ତା'ର ସୁସମାଧାନ କରି ଆସିଥିବା କ୍ୟାପଟେନଙ୍କ ଜୀବନରେ ଏହା ଏକ କଠୋର ପରୀକ୍ଷାର ସମୟ ନିଶ୍ଚିତ । ଏ ପରୀକ୍ଷାରେ ତାଙ୍କୁ ନିଶ୍ଚିତ ସଫଳତା ହାସଲ କରିବାକୁ ହେବ ଏବଂ ନିଜର ସୁନାମକୁ ବଜାଏ ରଖିବାକୁ ହେବ । ନଚେତ୍ ବୀର ପରି ଯୁଦ୍ଧକରି ଡ୍ରାଗନ ହାତରେ ମୃତ୍ୟୁବରଣ କରିବା ହିଁ ଶ୍ରେୟସ୍କର ।

ନିଜର ସଫଳତା କାମନା କରି ପ୍ରାର୍ଥନା କଲେ କ୍ୟାପ୍‌ଟେନ୍ । ପ୍ରାତଃ ଆଗତ । ସିନ୍ଦୁରା ଫାଟି ଆସିବାକୁ ଆଉ ଅଳ୍ପ ସମୟ ବାକୀ । ସାଗରର ଜଳରାଶି ସ୍ଥିର ଆଉ କମନୀୟ । ଶୀତ ଦିନ ଆକାଶରେ ମେଘ ମାଳାର ଚିହ୍ନବର୍ଣ୍ଣ ନାହିଁ ।

ନୀଳ ଆକାଶ ଚକ୍ରବାଳଠାରେ ନୀଳ ସାଗର ସହିତ ମିଶି ଏକ ନୀଳର ଗାଲିଚା ସୃଷ୍ଟି କରିଛି । ସୈନ୍ୟବାହିନୀର ବେଗୁଲ ନାଦରେ ସମସ୍ତ କର୍ମଚାରୀ ପ୍ରାତ ବ୍ୟାୟାମ ସାରି ପ୍ରସ୍ତୁତ । ସେମାନଙ୍କୁ ଏକ ଅଜଣା ଦ୍ୱୀପର, ଅଜଣା ଜନ୍ତୁକୁ ସାମନା କରିବାକୁ ଯିବାକୁ ହେବ । ଛୋଟ ଛୋଟ ନୌକା ପ୍ରସ୍ତୁତ । ଏବେଠାରୁ ତାଙ୍କୁ ସମସ୍ତଙ୍କୁ ସାବଧାନତା ଅବଲମ୍ବନ କରିବାକୁହେବ । ନଚେତ୍ କେତେବେଳେ କ'ଣ ହେବ କିଏ କହିବ ? ଜାହାଜର ଡେକ ଉପରେ ଅତ୍ୟାଧୁନିକ ମେସିନଗନ, ଷ୍ଟେନଗନ, ଶକ୍ତିଶାଳୀ ବାଇନାକୁଲାର ସହ ଦକ୍ଷ କମାଣ୍ଡର ଓ ସୈନ୍ୟବାହିନୀ ପ୍ରସ୍ତୁତ । ସେମାନଙ୍କର ମୋଟ ସଂଖ୍ୟା ପ୍ରାୟ ତିନି ଶହ । ଏକ ଶୁଭ ମୁହୂର୍ତ୍ତରେ ଜାହାଜର ଶୁଭାରମ୍ଭ ପାଇଁ ସୂଚନା ଦେଲେ କ୍ୟାପଟେନ । ଦଶ କୋଡ଼ିଏ ମିନିଟ୍ ସାଗରର ନୀଳ ଆକାଶକୁ କଳା ଧୂଆଁରେ ଆଚ୍ଛାଦିତ କରି ଏମ୍.ଭି. ଭିକ୍ଟୋରିଆ ଜାହାଜ ଦକ୍ଷିଣ ଦିଗକୁ ମୋଡ଼ ବଦଳାଇ ଆଗେଇ ଚାଲିଲା । ଶିରା ଶିରା ସ୍ଥିର ନୀଳ ଜଳରାଶି ଉପରେ ଉଚ୍ଚ ଲହରୀମାଳା ସୃଷ୍ଟି ହୋଇ ଆଖି ପାଇବାଯାଏ ସାଗର ବକ୍ଷରେ ତରଙ୍ଗ ସୃଷ୍ଟି କରି ମାଡ଼ିଗଲା । ଘୋର ଘର୍ଘର ଶବ୍ଦକରି ଆଗେଇଲା ଭିକ୍ଟୋରିଆ । ଜାହାଜ ଉପରେ ସମସ୍ତେ ପ୍ରସ୍ତୁତ । କ୍ୟାପଟେନଙ୍କ କୋଠରୀରେ ଜାହାଜ ଚାଳନାର ପ୍ରତ୍ୟକ୍ଷ ନିର୍ଦ୍ଦେଶ ଦେଉଥିଲେ କ୍ୟାପଟେନ ସ୍କଟ୍ । ପାଖରେ ବସିଛନ୍ତି ଡିସୋଜା ।

ହର୍ଷ ମୁଖରେ କ୍ୟାପଟେନ ପ୍ରଶ୍ନ କଲେ ମିଃ. ଡିସୋଜା ! – ଆଜିର ସକାଳ କେମିତି ଲାଗୁଛି ? ଡିସୋଜା ସେହି କାଳରାତ୍ରିର ଦାନବ ସହିତ ମୁହାଁମୁହିଁ ଘଟଣାକୁ ମନେ ପକାଇ ଚାଲିଥିଲେ । ବୋଧହୁଏ କ୍ୟାପଟେନ ଏକ ଛୋଟ କାମ କରିବାକୁ ଯାଉଛନ୍ତି ତେଣୁ ତାଙ୍କ ମନରେ ଦୁଃଖ ନାହିଁ, ଭୟ ନାହିଁ କି କୌଣସି ପ୍ରକାର ସନ୍ଦେହର ଚିହ୍ନ ନାହିଁ । ମାତ୍ର ଥରେ ସେହି ରାକ୍ଷସଜୀବ ସହିତ ସାକ୍ଷାତ ହୋଇସାରିବା ପରେ ତା'ର ଭୟଙ୍କର ରୂପ ଦର୍ଶନ ପରେ କ୍ୟାପ୍‌ଟେନ ଓ ସହକର୍ମୀଙ୍କ ଅବସ୍ଥା କ'ଣ ହେବ ଏବଂ କିପରି ଭାବେ ତାକୁ କରାୟତ୍ତ କରାଯିବ ତାହାହିଁ ଚିନ୍ତା କରୁଥିଲେ ଡିସୋଜା । ପୂର୍ବ ପ୍ରସ୍ତୁତି ଓ ଚତୁରତାର ସହ ନ ଆଗେଇଲେ କେତୋଟି ମୂଲ୍ୟବାନ ଜୀବନ ଯେ ହରାଇବାକୁ ପଡ଼ିବ ଏହା ନିଶ୍ଚିତ । ମାତ୍ର କ୍ୟାପଟେନଙ୍କ ସମେତ ସମସ୍ତେ ଏହି ଜୀବର ଆକାର ପ୍ରକାର ବିଷୟରେ ସନ୍ଦେହ କରୁଥିଲେ ଏବଂ ଖୁବ୍ ସୁବିଧାରେ ସେମାନେ ତାକୁ ଅକ୍ତିଆର

କରିପାରିବେ ବୋଲି ଚିନ୍ତା କରୁଥିଲେ; ତେଣୁ ତାଙ୍କୁ କୌଣସି ପ୍ରକାର ଉପଦେଶ ଦେଇ ପାରୁନଥିଲେ ଡିସୋଜା । ଥରେ ସେ ଜୀବ ସହିତ ସାକ୍ଷାତ ହେବା ପରେ ଯାଇ ଘଟଣାକୁ ସମସ୍ତେ ହୃଦୟଙ୍ଗମ କରିବେ ଏହାହିଁ ଡିସୋଜା ଚିନ୍ତା କରୁଥିଲେ ।

କ୍ରମେ ସୂର୍ଯ୍ୟଦେବତା ପୂର୍ବ ଆକାଶର ସାଗରବକ୍ଷକୁ ଚିରି ଆକାଶକୁ ଉଠିଲେ । ଧୀର ସ୍ଥିର ଭାବେ ଚାଲିଥିଲା ଭିକ୍ଟୋରିଆ । ସମସ୍ତେ ପ୍ରାତଃ ଜଳଖିଆ ଖାଇ ନେଇଥିଲେ । ବୟ ଆସି ଦୁଇ କପ୍ କଫି ଦେଇଗଲା । କଫି କପ୍‌ରେ ମୁହଁ ଦେଉ ଦେଉଁ ଡିସୋଜା ଆରମ୍ଭ କଲେ – "କ୍ୟାପଟେନ୍ ! ସେହି ଦାନବ ଡ୍ରାଗନ ତଥା ବିପଦଶଙ୍କୁଳ ଦ୍ୱୀପ ଭିତରକୁ ଆମକୁ ଯିବା ପୂର୍ବରୁ ଖୁବ୍ ସତର୍କତାର ସହ ଆଗେଇବାକୁ ପଡ଼ିବ । ପୂର୍ବରୁ ଏ ବିଷୟରେ ଆମେ ଗଭୀରଭାବେ ଚିନ୍ତା ନ କଲେ ଅନେକଙ୍କୁ ସେହି ଆଶ୍ଚର୍ଯ୍ୟ ଦ୍ୱୀପର ଅରଣ୍ୟର ବିଷଧର ଜୀବଜନ୍ତୁ ଓ ଡ୍ରାଗନର ଶିକାର ହୋଇ ମୃତ୍ୟୁବରଣ କରିବାକୁ ହେବ ।"

ମାତ୍ର କ୍ୟାପ୍‌ଟେନ୍ ନିଜର ଚୁରୁଟରୁ ଭସ୍ ଭସ୍ ଧୂଆଁ ବାହାର କରି କହୁଥିଲେ ମିଃ. ଡିସୋଜା ! ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ସମୁଦ୍ର ଭିତରେ ୪୦ ବର୍ଷ କଟାଇ ସାରିଲିଣି । ଅନେକ ଦ୍ୱୀପର ବହୁ ଜୀବଜନ୍ତୁଙ୍କୁ ଦେଖିଛି । ଆମ ନିକଟରେ ପ୍ରବଳ ପରାକ୍ରମୀ ସୈନ୍ୟଦଳ, ସାହସୀ, ଚତୁର କମାଣ୍ଡର, ସର୍ବୋପରି ଅତ୍ୟାଧୁନିକ ଯନ୍ତ୍ରପାତି, ସବୁ ରହିଥିବା ବେଳେ ଆମର କ'ଣ ଅସୁବିଧା ଅଛି । ଖୁବ୍ ସୁବିଧାରେ ଆମେ ସେହି ରାକ୍ଷସ ଡ୍ରାଗନକୁ ଆୟତ୍ତ କରି ଯୁବକଙ୍କୁ ଉଦ୍ଧାର କରି ପାରିବା । ତୁମେ କେବଳ ଆମକୁ ରାସ୍ତା ଦେଖାଅ । ଅନ୍ୟ ସବୁକଥା ମୋ ଉପରେ ଛାଡ଼ିଦିଅ ।"

ଚୁପ୍ ହୋଇ ବିଭୀଷିକାମୟ ଭବିଷ୍ୟତକୁ କଳ୍ପନା କରୁଥିଲେ ଡିସୋଜା । ଘଣ୍ଟାରେ ୯ଟା ବାଜିଲା । ହଠାତ୍ କ୍ୟାପ୍‌ଟେନଙ୍କ କୋଠରୀକୁ ଜଣେ କମାଣ୍ଡର ଦୌଡ଼ିଆସି କହିଲା – ସାର୍ ! ବାଇନାକୁଲାରରେ ସବୁଜିମାଭରା ଦ୍ୱୀପର ଉପସ୍ଥିତି ଦେଖାଗଲାଣି । ଉତ୍‌ଫୁଲ୍ଲିତ ହୋଇ କ୍ୟାପ୍‌ଟେନ ଆଗେଇଗଲେ ଓ ବାଇନାକୁଲାରରେ ସେହି ଅଜଣା ଦ୍ୱୀପର ସବୁଜିମା ଦେଖି ଡିସୋଜାଙ୍କୁ ଡାକିଲେ ।

ଡିସୋଜାଙ୍କ ଆଖି ବାଇନାକୁଲାରରେ ଲାଗିବା ମାତ୍ରେ ତାଙ୍କ ଶରୀରର ଲୋମମୂଳ ଟାଙ୍କୁରି ଉଠିଲା । ଏହି ସେହି ଦ୍ୱୀପ । ଘଞ୍ଚ ଜଙ୍ଗଲ, ପଛକୁ ଛୋଟ ପାହାଡ଼ ଯେଉଁଠାରେ ତାଙ୍କର ସେହି ରାକ୍ଷସ ଡ୍ରାଗନ ସହିତ ମୁହାଁମୁହିଁ ହୋଇଥିଲା ଓ ତା' ପଛକୁ ଲମ୍ବି ରହିଥିବା ନୀଳପର୍ବତ, ଯାହା ପଛରେ ସୂର୍ଯ୍ୟଦେବତା ଅସ୍ତ ହୋଇଥାନ୍ତି । ଏହା ଯେ ସେହି ଭୟଙ୍କର ଦ୍ୱୀପ ତାହା ଡିସୋଜା କ୍ୟାପ୍ଟେନଙ୍କୁ ଜଣାଇ ଦେଲେ ।

ପ୍ରାୟ ଘଣ୍ଟାଏ କାଳ ପଶ୍ଚିମକୁ ଚାଲିବାପରେ ସେହି ଭୟଙ୍କର ଦ୍ୱୀପର ନିକଟବର୍ତ୍ତୀ ହେଲା ବିରାଟକାୟ ଜାହାଜ ଏମ୍.ଭି.ଭିକ୍ଟୋରିଆ । ଏହା ପୂର୍ବରୁ ବୋଧହୁଏ କୌଣସି ଜାହାଜ ଏହି ଦ୍ୱୀପ ନିକଟକୁ ଆସିନଥିଲା । ଆକାଶକୁ ମୁଣ୍ଡ ଟେକିଥିବା ବିରାଟକାୟ ଏକ ପାଇନ ଗଛର ସୌନ୍ଦର୍ଯ୍ୟକୁ ବାଇନାକୁଲାର ସାହାଯ୍ୟରେ ଦେଖୁଥିଲେ କ୍ୟାପ୍ଟେନ୍ । ଏହିଠାରେ ହିଁ ଜାହାଜକୁ ଲଙ୍ଗର୍ ପକାଇବାକୁ ହେବ । ଏଠାରୁ କ୍ଷୁଦ୍ର ବୋଟ ସାହାଯ୍ୟରେ ଦ୍ୱୀପ ଭିତରକୁ ଯିବାକୁ ହେବ । କ୍ୟାପ୍ଟେନ୍‌ଙ୍କ ନିର୍ଦ୍ଦେଶରେ ବିରାଟକାୟ ଲଙ୍ଗର୍ ଖୋଲିଦିଆଗଲା ଓ କିଛି ସମୟ ଭିତରେ ଏହା ସାଗରଗର୍ଭର ମାଟି ଛୁଇଁ ଦୃଢ଼ ହୋଇଗଲା ।

ସମସ୍ତେ ପ୍ରସ୍ତୁତ । ମଧ୍ୟାହ୍ନ ଆଗତ ପ୍ରାୟ । ସମସ୍ତ କାର୍ଯ୍ୟ ଶେଷକରି ଦ୍ୱୀପ ମଧ୍ୟକୁ ଯାତ୍ରା କରିବାର ସମସ୍ତ କାର୍ଯ୍ୟକ୍ରମ ଚୂଡ଼ାନ୍ତ ହେଲା । ପ୍ରାୟ ଏକଶହ ସୈନ୍ୟ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ପ୍ରଥମ ପର୍ଯ୍ୟାୟରେ ଦ୍ୱୀପମଧ୍ୟକୁ ଯିବେ । ତାଙ୍କ ସହିତ ୫ ଜଣ ଦକ୍ଷ କମାଣ୍ଡର । ଖୋଦ କ୍ୟାପ୍ଟେନ୍ ସ୍କଟ୍, ମୁଖ୍ୟ କମାଣ୍ଡର ରବୀନ ସ୍ମିଥ୍ ଓ ତାଙ୍କ ସହିତ ଯିବେ ଡିସୋଜା । କ୍ୟାପ୍ଟେନ୍‌ଙ୍କ ଇଙ୍ଗିତରେ ଛୋଟ ଛୋଟ ଟର୍ପେଡୋକୁ ସାଗର ବକ୍ଷକୁ ଖସାଇ ଦିଆଗଲା । ସୁସଜ୍ଜିତ ସେନା ଅତ୍ୟାଧୁନିକ ଅସ୍ତ୍ରରେ ସଜ୍ଜିତ ହୋଇ ପ୍ରତ୍ୟେକ ନୌକାରେ ଦଶଜଣ ଲେଖାଏଁ ରହିଲେ । ମୋଟ ବାରଟି ଦ୍ରୁତଗାମୀ ନୌକା ସାଗର ଜଳ ସ୍ପର୍ଶ କଲା । ପ୍ରତ୍ୟେକଙ୍କ ସହିତ କିଛି ଶୁଖିଲା ଖାଦ୍ୟ ଓ ମୁଣ୍ଡରେ ଉଜ୍ଜଳ ଆଲୋକ ପ୍ରଦର୍ଶନ କରୁଥିବା ସ୍ୱତନ୍ତ୍ର ଟର୍ଚ୍ଚ ଲାଇଟ୍ । କ୍ୟାପ୍ଟେନ୍ ଓ ପ୍ରତ୍ୟେକ ଦଳଙ୍କ ନିକଟରେ ସ୍ୱତନ୍ତ୍ର ଟେଲିଫୋନ ଯନ୍ତ୍ର, ଶକ୍ତିଶାଳୀ କ୍ୟାମେରା ଓ ବାଇନାକୁଲାର । ଜାହାଜ ଲଙ୍ଗର ପକାଇଥିବା ସ୍ଥାନରୁ ସ୍ଥଳଭାଗ ପ୍ରାୟ ଦୁଇ ବା ତିନି କିଲୋମିଟର

ଦୂର । ଏହାକୁ ଅତିକ୍ରମ କରିବାକୁ ଖୁବ୍ ବେଶୀରେ ଦ୍ଦଶ କି ପନ୍ଦର ମିନିଟ୍ ଲାଗିବ । ମାତ୍ର ପୂର୍ବରୁ ନିର୍ଦ୍ଦେଶଥାଏ ଯେ ସମସ୍ତେ କମ୍ ବେଗରେ ଯିବେ । ପ୍ରତ୍ୟେକ ଦଳର ମୁଖ୍ୟଙ୍କ ସହିତ ଅନ୍ୟ ଦଳ ସହିତ ସଂଯୋଗ ରକ୍ଷା କରିବାକୁ ଟେଲିଫୋନ୍ ବ୍ୟବସ୍ଥା ଥାଏ । ପାଞ୍ଚଟି ଦଳରେ ବିଭକ୍ତ ହୋଇ ସମସ୍ତେ ଆଗେଇବାକୁ ନିଷ୍ପତ୍ତି ହୋଇଥାଏ । କୌଣସି ପ୍ରକାର ଆଶଙ୍କା ବା ବିପଦର ସୂରାକ ପାଇବା ମାତ୍ରେ ନିଜ ନିକଟରେ ଥିବା ସ୍ୱତନ୍ତ୍ର ହୁଇସିଲ୍ ବଜାଇଲେ ଅନ୍ୟ ଦଳର ସେନା ସେଠାକୁ ଯିବାକୁ ନିର୍ଦ୍ଦେଶ ରହିଥାଏ ।

ଗୋଟିଏ ଗ୍ରୁପ୍ ସୈନ୍ୟଦଳ ଜାହାଜ ଉପରେ ସତର୍କ ହୋଇ ରହିବାକୁ କମାଣ୍ଡର ରବିନ୍ ସ୍ମିଥ୍ ନିର୍ଦ୍ଦେଶ ଦେଇଥାନ୍ତି । କୌଣସି ବିଶେଷ ଘଟଣା ଘଟିଲେ ଜାହାଜ ଉପରୁ ଶକ୍ତିଶାଳୀ ବୋମା ନିକ୍ଷେପ କରିବାର ବ୍ୟବସ୍ଥା ମଧ୍ୟ ରହିଥାଏ ।

ସବୁ ବୋଟଗୁଡ଼ିକ ସମୁଦ୍ରଜଳ ସ୍ପର୍ଶ କଲାଣି । ଆଗରେ ଯାଉଛି କ୍ୟାପ୍ଟେନ୍ଙ୍କ ଟପେଡ୍ରୋ, ତା' ପଛକୁ ମୁଖ୍ୟ କମାଣ୍ଡର ରବୀନ୍ ସ୍ମିଥ୍ଙ୍କ ନୌକା ଓ ପରେ ପରେ ସମାନ୍ତରାଳ ଭାବେ ଚାଲିଛି ଦଶଟି ନୌକା । ସମସ୍ତଙ୍କ ମନରେ ଆନନ୍ଦର ଲହରୀ । ମାତ୍ର ଡିସୋଜା ହିଁ ଏକମାତ୍ର ଚିନ୍ତାଗ୍ରସ୍ତ । ପୁଣି ସେହି ଭୟଙ୍କର ଅଭିଜ୍ଞତାର ପୁନରାବୃତ୍ତି ଯେ କିଭଳି ଭାବେ ହେବ ତାହାକୁ ସେ କେବଳ କଳ୍ପନା କରି ଚାଲିଛନ୍ତି ମନ ଭିତରେ ।



# ସାଗର ଭିତରେ ଡ୍ରାଗନ

ସମସ୍ତ ନୌକା ପ୍ରାୟ ଜାହାଜଠାରୁ ଦେଢ଼ କିଲୋମିଟର ଆସି ଗଲାଣି । ଆଉ ପ୍ରାୟ ଦେଢ଼ ଦୁଇ କିଲୋମିଟର ପରେ ଅଜଣା ଦ୍ୱୀପରେ ପାଦ ଦେବେ ସେମାନେ । କିପରି ଭାବେ ଦ୍ୱୀପ ଭିତରକୁ ସମସ୍ତେ ଯିବେ ସେ ବିଷୟରେ କ୍ୟାପ୍‌ଟେନ ଆଲୋଚନା କରୁଥାନ୍ତି ଡିସୋଜାଙ୍କ ସହିତ । ଅନ୍ୟ ବୋଟଗୁଡ଼ିକ ଆଗପଛ ହୋଇ ଚାଲିଥାଏ । ଜାହାଜ ଉପରେ ଦେଖିଲେ ଜଣାପଡୁଥିଲା ସତେ ଯେପରି ଆଠ, ଦଶଟି ରାଜହଂସ ବିରାଟ ସାଗର ବକ୍ଷରେ ପହଁରି ଚାଲିଛନ୍ତି । ସମସ୍ତେ ନୀରବ । ଦ୍ୱୀପ ଭିତରେ ପହଁଞ୍ଚିଲେ ଯାଇଁ କାର୍ଯ୍ୟାନୁଷ୍ଠାନ । ସୈନ୍ୟମାନେ ତେଣୁ ଅସ୍ତ୍ରଶସ୍ତ୍ର ବୋଟର ଗୋଟିଏ କଡ଼ରେ ରଖିଦେଇ ସାଗର ଜଳ ସହିତ ଖେଳିବାରେ ବ୍ୟସ୍ତ । କେତେକ ସାଗର ଜଳର ଲବଣାଂଶ ପରୀକ୍ଷା କରୁଥିଲେ ତ କେତେକ ବାଇନାକୁଲାର ଦ୍ୱାରା ସାଗର ଜଳରେ ପହଁରୁ ଥିବା କ୍ଷୁଦ୍ର ଜଳଜୀବଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ । ସେମାନଙ୍କ ମନରେ ଭୟ, ଆତଙ୍କର କୌଣସି ଚିହ୍ନ ବର୍ଣ୍ଣ ନାହିଁ ।

ହଠାତ୍ ସାଗର ଜଳ ଦୁଇଭାଗ ହୋଇଗଲା । ଏକ ବିକଟ ଚିତ୍କାରରେ ସମସ୍ତେ ପ୍ରାୟ ହତବାକ ହୋଇ ଚାହିଁବା ପୂର୍ବରୁ ଏକ ରାକ୍ଷସ ଜୀବ ବିରାଟ ଦାନ୍ତ ଦେଖାଇ ହଠାତ୍ ଆବିର୍ଭାବ ହେଲା ଜଳ ଉପରେ । ତା'ର ବିକଟାଳ ଚିତ୍କାରରେ ଓ ହଲଚଲ ଦ୍ୱାରା ସାଗର ବକ୍ଷର ଜଳ ଭାଗ ଭାଗ ହୋଇ ଅଜାଡ଼ି ହୋଇପଡ଼ିଲା ଏହି ନୌକା ଉପରେ । ଉପକୂଳ ଆଉ ବେଶ୍ କିଛି ଦୂର । କ୍ୟାପଟେନଙ୍କ ନୌକା ଆଗରେ ଥିଲା । ଏହି ଜୀବର ଆବିର୍ଭାବ ସହିତ ତିନି ଚାରୋଟି ନୌକା ପ୍ରବଳ ଜଳ ଢେଉରେ ବୁଡ଼ିଗଲା । କ୍ୟାପଟେନ୍‌ଙ୍କ ସମେତ ସୈନ୍ୟ ମାନେ ଚିନ୍ତା କରିବା ପୂର୍ବରୁ ଏପରି ଘଟଣା ଘଟିଗଲା । ଅନେକ ସେହି ବିକଟାଳ ଜଳଜୀବର ରୂପ ଦର୍ଶନ କରିବା ମାତ୍ରେ ଆତଙ୍କିତ ହୋଇ ମୂର୍ଚ୍ଛା ହୋଇଗଲେ । ଏହା ଏକ ବିରାଟକାୟ ଗୋଧି ଆକୃତିର ଥିଲା । ଦୁଇଟି ହାତୀଠାରୁ ଏହାର ଶରୀର ବଡ଼ ଥିଲା । ମୁଣ୍ଡକୁ ଉପରକୁ ରଖି ଏହା ଖୁବ୍

କୂଳରେ ପହଁଚି ପାରୁଥିଲା । କ୍ୟାପଟେନ କିଂ କର୍ତ୍ତବ୍ୟ ବିମୂଢ଼ ହୋଇଯାଇଥିଲେ । ତତ୍‌କ୍ଷଣାତ୍ ସେ ଜାହାଜରେ ଥିବା କମାଣ୍ଡରଙ୍କୁ ଟେଲିଫୋନ୍ କଲେ ଜାହାଜ ଉପରୁ ଏହି ଜୀବକୁ ଲକ୍ଷ୍ୟକରି ବୋମା ନିକ୍ଷେପ କରିବାକୁ । ମାତ୍ର କମାଣ୍ଡର ତାହା କରି ପାରିଲେ ନାହିଁ । ଏହା କଲେ ହୁଏତ ସେହି ଜୀବ ସହିତ ବହୁ ସୈନ୍ୟ ପ୍ରାଣ ତ୍ୟାଗ କରିବେ । କ୍ୟାପଟେନଙ୍କ ନିକଟରେ କୌଣସି ବୁଦ୍ଧି ନଥିଲା । ସେ ଢେଉରେ ଟଳମଳ ହେଉଥିବା ତାଙ୍କ ବୋଟରେ ବସିରହି ଶକ୍ତିଶାଳୀ ବନ୍ଧୁକ ଧରି ସେହି ଜୀବକୁ ଲକ୍ଷ୍ୟ କରୁଥିଲେ । ମାତ୍ର ବନ୍ଧୁକ ଟ୍ରାଗ୍ରେଟ ଚିପିବାକୁ ସକ୍ଷମ ହେଉ ନଥିଲେ, ସବୁବେଳେ ତାଙ୍କ ଆଗକୁ କୌଣସି ନା କୌଣସି ବୋଟ ଚାଲି ଆସୁଥିଲା । ଦ୍ୱିତୀୟତଃ ଏହି ଜୀବ ପାଣି ଉପରକୁ କିଛି ସମୟ ଉଠିବା ପରେ ସଙ୍ଗେ ସଙ୍ଗେ ବୁଡ଼ିଯାଉଥିଲା ଓ ପରେ ଉଠି ପୁଣି ଆକ୍ରମଣ



କରୁଥିଲା । କେତେକ ସୈନିକ ବନ୍ଧୁକ ଇତ୍ୟାଦି ଛାଡ଼ି କୂଳକୁ ପହଁଚିବାରେ ଲାଗିଥିଲେ । ହୁଏତ ଜୀବନ ରକ୍ଷା କରିପାରିବେ । ମାତ୍ର ଏହି ଜୀବର ଆକ୍ରମଣରେ ଅନେକ ଖଣ୍ଡିଆ ଖାବରା ହୋଇଥିଲେ । ବିରାଟକାୟ ନଖ ସାହାଯ୍ୟରେ ଏହା ସୈନ୍ୟମାନଙ୍କୁ ଆକ୍ରମଣ କରୁଥିଲା ଓ କାମୁଡ଼ିବାକୁ ଚେଷ୍ଟା କରୁଥିଲା । ଏହି ପ୍ରକାର ଅଦ୍ଭୁତ ଜୀବକୁ ଆଗରୁ କେହି ଦେଖି ନଥିଲେ । ଡିସୋଜା ମଧ ଏ ପ୍ରକାର ବିପତ୍ତିରେ ଆଗରୁ ସମ୍ମୁଖୀନ ହୋଇ ନଥିଲେ । ନୂତନ ଭୟଙ୍କର ଜୀବ ଓ ନୂଆ ବିପଦ ଦେଖି ସେ ଅତ୍ୟଧିକ ଭୟାତୁର ହୋଇ ଯାଇଥିଲେ ଓ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । କମାଣ୍ଡର ରବୀନ ସ୍ମିଥଙ୍କ ହାତର ମେସିନ୍

ଗନ୍ ହଠାତ୍ ଗର୍ଜନ କରି ଉଠିଲା । ସ୍ମିଥ୍‌ଙ୍କ ପରି ଜଣେ ପୋଖତ ସାମରିକ ଅଫିସରଙ୍କ ଲକ୍ଷ୍ୟ ଅବ୍ୟର୍ଥ ଥିଲା । ବୋଧହୁଏ ଏହି ଗୁଳି ଡ୍ରାଗନର ମୁଖ ଭେଦ କରିଥିଲା । ବିରାଟ ଚିତ୍କାର କରି ଏହା ସାଗର ଜଳରେ ବୁଡ଼ି ଯାଇଥିଲା ।

ଏହି ପ୍ରକାର ସାଗର ଭିତରେ ସଂହାର ଓ ଆକ୍ରମଣ ଲୀଳା ପ୍ରାୟ ଦଶ ମିନିଟ୍ ଯାଏ ଚାଲିଥିଲା । ଡିସୋଜା ଭାବୁଥିଲେ ଆଜି ଏହି ଡ୍ରାଗନ ଆକ୍ରମଣରୁ ଆଉ ବୋଧହୁଏ କାହାର ମୁକ୍ତି ନାହିଁ । ଯଦି ସ୍ମିଥ୍‌ଙ୍କ ଗୁଳି ନବାଜିଥାନ୍ତା ତେବେ ହୁଏତ ସମସ୍ତେ ସେଦିନ ସେହି ଡ୍ରାଗନ ଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥାନ୍ତେ । ଜାହାଜର କର୍ମଚାରୀ ଓ ସୈନ୍ୟମାନେ ମୂକଭଳି ଠିଆ ହୋଇ ସମୁଦ୍ର ଭିତରେ ସେହି ଡ୍ରାଗନର ନରସଂହାର ଦେଖୁଥିଲେ । ସେମାନଙ୍କ ପାଇଁ କରିବାର କିଛି ନଥିଲା । ସେମାନଙ୍କ ଭିତରୁ କେତେକ ଏହି ଭୟଙ୍କର ଜୀବକୁ ଦେଖି ମୁକ ପାଲଟି ଯାଇଥିଲେ । ବୋଧହୁଏ ଗୁଳି ସେହି ଜନ୍ତୁର ଶରୀର ଭେଦ କରିଥିଲା ଏବଂ ସେ ଆହତ ହୋଇଥିଲା । ତେଣୁ ପୁନର୍ବାର ତା'ର ଆଉ ଦେଖା ମିଳିଲା ନାହିଁ । କ୍ୟାପଟେନ୍‌ଙ୍କ ହୁଇସିଲ୍ ବାଜି ଉଠିଲା । ସମସ୍ତେ କୂଳଆଡ଼କୁ ଆସି ଅନ୍ତତଃ ଜୀବନ ବଞ୍ଚାଇବାକୁ ପ୍ରଥମେ ଚେଷ୍ଟା କରିବା ଦରକାର । ସମୁଦ୍ର ଭିତରେ ଆହତ ଅବସ୍ଥାରେ ପହଁରୁଥିବା ବହୁ ସୈନ୍ୟଙ୍କୁ ଉଦ୍ଧାର କରାଯାଇ ନୌକା ଉପରକୁ ଉଠାଗଲା । ଏହି ଡ୍ରାଗନ ଆକ୍ରମଣରେ ତିନି ଚାରିଟି ନୌକା ସମ୍ପୂର୍ଣ୍ଣ ଭାଙ୍ଗିରୁଜି ଯାଇଥିଲା ଓ ସୈନ୍ୟମାନଙ୍କର ମନୋବଳ ତୁଟି ଯାଇଥିଲା । ସମସ୍ତେ ଆତଙ୍କିତ ହୋଇ ଯାଇଥିଲେ । କୌଣସିମତେ ସମସ୍ତେ ବଞ୍ଚି ଯାଇଥିଲେ ମଧ ଅଧିକାଂଶ ଖଣ୍ଡିଆ ଖାବରା ହୋଇ ଆହତ ହୋଇଥିଲେ । କ୍ୟାପଟେନଙ୍କ ନିର୍ଦ୍ଦେଶରେ ସମସ୍ତେ କୂଳ ଆଡ଼େ ଆଗେଇଲେ । ସେତେବେଳେ ଜୁଆର ଛାଡ଼ି ଥିଲା । ବୋଧହୁଏ ଦଶମୀ ଏକାଦଶୀ ତିଥି । ଉପକୂଳରେ ବାଲୁକା ଶଯ୍ୟା ଦୂରରୁ ଦେଖାଯାଉଥିଲା । ଡିସୋଜା ଲକ୍ଷ୍ୟ କଲେ ସେ ସେଦିନ ପହଁଞ୍ଚିଥିବା ସ୍ଥାନ ଏହା ନୁହେଁ ।

ସମସ୍ତଙ୍କୁ ଉପକୂଳର ବାଲୁକା ଶଯ୍ୟାରେ ଶୁଆଇ ଦିଆଗଲା । ଆହତମାନଙ୍କୁ ଯାହାକିଛି ଔଷଧ ପତ୍ର ଥିଲା ସେଇଥିରେ ପ୍ରାଥମିକ ଚିକିତ୍ସା କରାଗଲା । ଆହତ ଡ୍ରାଗନ ବିଷୟରେ କୌଣସି ଖୋଜଖବର ନଥିବାରୁ ଏବଂ

ଏହା ପୁଣି ଆକ୍ରମଣ କରିବାର ଭୟ ଥିବାରୁ ଜାହାଜରୁ କୌଣସି କର୍ମଚାରୀ ପୁଣି ସମୁଦ୍ର ପଥରେ ତାଙ୍କ ନିକଟକୁ ନ ଆସିବାକୁ କ୍ୟାପଟେନ ନିର୍ଦ୍ଦେଶ ଦେଲେ । ଏକଶତ ସୈନ୍ୟଙ୍କ ମଧ୍ୟରୁ ପ୍ରାୟ ତିରିଶି ଜଣ ଆହତ ହୋଇଥିଲେ । ଅନେକ ଭୟରେ ଥରୁଥିଲେ । କେତେକଙ୍କ ମୁହଁ ଓ ଗାଲରେ ଡ୍ରାଗନ୍ ଆମ୍ପୁଡ଼ା ଯୋଗୁଁ କ୍ଷତ ସୃଷ୍ଟି ହୋଇଥିଲା । କ୍ୟାପଟେନ୍‌ଙ୍କ ନିର୍ଦ୍ଦେଶରେ ସମସ୍ତେ ସେମାନଙ୍କର ସେବାରେ ଲାଗିଗଲେ । ବହୁ ଅସ୍ତ୍ରଅସ୍ତ୍ର ସାଗର ବକ୍ଷରେ ନିଖୋଜ ହୋଇ ସାରିଥିଲା । ଯାହା କିଛି ଥିଲା ସେତକ ଧରି କେତେଜଣ ସୈନିକ ଆହତମାନଙ୍କୁ ଜଗି ରହିଲେ ।

ବର୍ତ୍ତମାନ ଜାହାଜ ସହିତ ସମସ୍ତ ସମ୍ପର୍କ ଛିନ୍ନ । ଯାହା ଟେଲିଫୋନ୍‌ରେ ସମ୍ପର୍କ ରକ୍ଷା କରିବା କଥା । କାରଣ ଜାହାଜରୁ ଆସିବା ଓ ସ୍ଥଳଭାଗରୁ ଜାହାଜ ଭିତରକୁ ଯିବା ପଥ ବିପଦ ଶଙ୍କୁଳ । ଯଦି ଡ୍ରାଗନ ଆହତ ହୋଇ ପାଣି ଭିତରେ ଆତ୍ମଗୋପନ କରିଥାଏ ତେବେ ପୁଣି ଆକ୍ରମଣ କରିବାର ଆଶଙ୍କା ଥିବାରୁ ଜାଣିଶୁଣି ବିପଦକୁ ଆବୋରି ନେବା ଠିକ୍ ହେବ ନାହିଁ ।

କ୍ୟାପଟେନ୍ ଚିନ୍ତାମଗ୍ନ ଥିଲେ । ଏହି ଡ୍ରାଗନ କୌଣସି ଜଳଜୀବ ନୁହେଁ । ସେ ଚାଳିଶ ବର୍ଷ କାଳ ସାଗର ବକ୍ଷରେ କଟାଇଛନ୍ତି । ଏ ପ୍ରକାର ଭୟଙ୍କର ଜୀବକୁ ଦେଖିବାକୁ କାହିଁ କେବେ ତ ସକ୍ଷମ ହୋଇ ନାହାଁନ୍ତି । ଗୋଧି କୁମ୍ଭୀର ଶ୍ରେଣୀଭୁକ୍ତ ଏହା ନିଶ୍ଚିତ ରୂପେ ଏକ ବିରାଟକାୟ ସରୀସୃପ ଏବଂ ସ୍ଥଳ ଭାଗର ବାସିନ୍ଦା । ବୋଧହୁଏ ଏତେଗୁଡ଼ିଏ ମାନବ ଓ ବୋଟ ପ୍ରଥମ ଥର ପାଇଁ ଦେଖି ଏହା ସେମାନଙ୍କୁ ଆକ୍ରମଣ କରିଛି ।

ଡିସୋଜା ନିରୁତ୍ତର ଓ ଚିନ୍ତାମଗ୍ନ ! କ'ଣ ତାଙ୍କର ମୃତ୍ୟୁ ସହ ସାକ୍ଷାତ କାର୍ଯ୍ୟକ୍ରମ ଏବେ ସୁଦ୍ଧା ସରିନାହିଁ । ଏହି ଚାରି ପାଞ୍ଚ ଦିନ ଭିତରେ ସେ ବହୁବାର ମରୁ ମରୁ ବଞ୍ଚି ଆସିଛନ୍ତି । ବର୍ତ୍ତମାନ ପୁଣି ସେହି ଦଶା । ଅନ୍ୟ ଏକ ରାକ୍ଷସ ଜୀବକୁ ଦେଖି ଡିସୋଜା ଅତ୍ୟନ୍ତ ଭୟଭୀତ ହୋଇ ଯାଇଥିଲେ । ସେ ମୌନରହି ଭବିଷ୍ୟତକୁ କଳନା କରୁଥିଲେ ।

ଆଗକୁ କାଳରାତ୍ରି । ଗୋଧୂଳି ଆସିଗଲାଣି । ଆଜିର ରାତ୍ରି ତାଙ୍କ ପାଇଁ କ'ଣ ହେବ ସେ କଥା କିଏ କହିବ ? କ୍ୟାପଟେନ୍ ତୁରନ୍ତ ସମସ୍ତଙ୍କୁ ପ୍ରସ୍ତୁତ

ହେବାକୁ ପରାମର୍ଶ ଦେଲେ । କାରଣ ଆଉ ଜାହାଜକୁ ଫେରିବାର ସମ୍ଭାବନା ନାହିଁ । ଜାହାଜକୁ ଫେରିବା ବାଟରେ ରାତ୍ରିର ଡ୍ରାଗନର ସମ୍ମୁଖୀନ ହୋଇ ମୃତ୍ୟୁ ବରଣ କରିବାଠାରୁ ଏହି ସ୍ଥଳଭାଗରେ ରହିବା ଭଲ । ସେଥିପାଇଁ ସତର୍କତା ଓ ପ୍ରସ୍ତୁତି ଦରକାର । ଏହା ବ୍ୟତୀତ ଏହି ବିଭୀଷିକାମୟ ଦ୍ୱୀପରେ ମଧ୍ୟ ଅନ୍ୟ ଏକ ରାକ୍ଷସ ଡ୍ରାଗନ ସହିତ ସାକ୍ଷାତ ହେବାର ବହୁ ସମ୍ଭାବନା ରହିଛି । କ୍ୟାପଟେନ୍‌ଙ୍କ ନିର୍ଦ୍ଦେଶରେ ଆହତମାନଙ୍କୁ ଜଗି କୋଡ଼ିଏ ଜଣ ସୈନ୍ୟ ସାଗର କୂଳରେ ପହରା ଦେଲେ ଏବଂ ଅନ୍ୟ ପଚାଶ ଜଣ ତାଙ୍କ ସହିତ ଜଙ୍ଗଲ ଭିତରେ ଡ୍ରାଗନ ତଥା ନିଖୋଜ ଯୁବକର ସନ୍ଧାନରେ ଅଗ୍ରସର ହେଲେ । କାରଣ ଡିସୋଜାଙ୍କ ତଥ୍ୟ ଅନୁସାରେ ରାତ୍ରିରେ ହିଁ ରାକ୍ଷସ ଡ୍ରାଗନ୍ ସହିତ ଦେଖା ହେବାର ସୁଯୋଗ ମିଳେ ।

କ୍ରମେ ଜଙ୍ଗଲ ଗାଢ଼ରୁ ଗାଢ଼ତର ହେଲା । ସମସ୍ତେ ସତର୍କତାର ସହିତ ଆଗେଇ ଚାଲିଥିଲେ । ଆଗରେ ଡିସୋଜ ଓ କ୍ୟାପଟେନ୍, କମାଣ୍ଡର ରବୀନ ସ୍ମିଥ ।  ରାସ୍ତାରେ ହିଂସ୍ର ଜନ୍ତୁଙ୍କୁ ଦେଖିଲେ ବି ବନ୍ଧୁକ ଫୁଟାଇବାକୁ ସମସ୍ତଙ୍କୁ ମନା କରାଯାଇଥିଲା । କାରଣ ଏହାର ଶବ୍ଦ ଶୁଣି ଡ୍ରାଗନ ହୁଏତ ଚାଲାଖ ହୋଇ କିଛି ଅଘଟଣ କରିପାରେ । ଅତି ସତର୍କତାର ସହିତ ଆଗଉଥିଲେ କ୍ୟାପଟେନ୍ ଏବଂ ସେମାନଙ୍କ ଦଳ । ରାତ୍ରିର ପ୍ରଥମ ପ୍ରହର ସୁଦ୍ଧା ସେମାନେ ଡିସୋଜା କହୁଥିବା ଖୋଲା ପଡ଼ିଆ ଠାରେ ପହଞ୍ଚିଗଲେ ଯାଇ ଡ୍ରାଗନକୁ ଦେଖିବା ସୁବିଧା ହେବ ।

ଜଙ୍ଗଲଟି ହିଂସ୍ର ଜନ୍ତୁରେ ପୂର୍ଣ୍ଣଥିଲା ଓ ବହୁ ସର୍ପ, ବିଛା, ଗୋଧି, କଙ୍କଡ଼ା, ମାରାତ୍ମକ କୀଟ ପତଙ୍ଗର ଲୀଳା କ୍ଷେତ୍ର ଥିଲା । ସୈନ୍ୟମାନେ ବହୁ ସର୍ପଙ୍କ ଉପରେ ଚଢ଼ି ଯାଉଥିଲେ ମଧ୍ୟ ପାଦ ଓ ଦେହସାରା ଚମଡ଼ାର ପୋଷାକ ଥିବାରୁ ସର୍ପ ଦଂଶନରୁ ରକ୍ଷା ପାଉଥିଲେ । ଘଞ୍ଚ ଜଙ୍ଗଲ, ଜଙ୍ଗଲ ଭିତରେ ଅତି ଉତ୍କଟ ଝିଙ୍କାରୀର ଶବ୍ଦ । ଏ ପ୍ରକାର ପରିସ୍ଥିତିରେ ଆଦୌ ଅଭ୍ୟସ୍ତ ନଥିବା ସୈନ୍ୟ ଦଳ କିନ୍ତୁ ସାହସର ସହିତ ଆଗେଇ ଚାଲିଥିଲେ । କ୍ୟାପଟେନଙ୍କ ସାହସିକ ବାଣୀ ସମସ୍ତଙ୍କୁ ଉତ୍ସାହ ଦେଉଥିଲା । ଜୀବନସାରା ଯେକୌଣସି କଷ୍ଟକର କାର୍ଯ୍ୟକୁ ହଜମକରି ଆସିଥିବା କ୍ୟାପ୍‌ଟେନ୍‌ଙ୍କ ପାଇଁ ଏହି ଅଭିମାନ ସେପରି

କିଛି ଗୁରୁତ୍ୱପୂର୍ଣ୍ଣ ନ ଥିଲା । ମାତ୍ର ସମୁଦ୍ର ପଥରେ ଡ୍ରାଗନ ସହ ସଂଗ୍ରାମ ଯୋଗୁଁ ସେ ପୂର୍ବାପେକ୍ଷା କିଛିଟା ଚିନ୍ତିତ ହୋଇ ପଡ଼ିଥିଲେ ଓ ସବୁବେଳେ ସତର୍କ ରହି କାମ କରୁଥିଲେ । ପ୍ରତ୍ୟେକଙ୍କ ମୁଣ୍ଡରେ ରାସ୍ତା ଦେଖିବାକୁ ଲାଗିଥିବା ଟର୍ଚ୍ଚ ଆଲୋକକୁ ଏକାଥରେ ସମସ୍ତେ ଜଳାଇବାକୁ ମଧ ମନା କରାଯାଇଥିଲା । ରାତ୍ରିରେ ଗୋଟିଏ ମାତ୍ର ଟର୍ଚ୍ଚ ଆଲୋକ ଜଳାଇ ତାହାରି ଆଲୋକ ଦ୍ୱାରା ପଥକୁ ଅନୁସରଣ କରି ସମସ୍ତେ ଆଗେଇ ଯିବାକୁ ନିର୍ଦ୍ଦେଶ ଥିଲା । ସ୍ଥଳଭାଗ ସନ୍ତସନ୍ତିଆ ଥିଲା । ସନ୍ଧ୍ୟା ଆଗମନ ସହିତ ବହୁ କୀଟ ପତଙ୍ଗ ସେନାମାନଙ୍କୁ ଘେରିଯାଇ ଦଂଶନ କରିବାକୁ ସର୍ବଦା ଚେଷ୍ଟାରତ ଥିଲେ । ଜୀବନରେ ବୋଧହୁଏ ଏମାନେ ପ୍ରଥମଥର ପାଇଁ ମଣିଷମାନଙ୍କୁ ଦେଖୁଥିଲେ ଓ ଏମାନଙ୍କ ରକ୍ତ ଚାଖିବାକୁ ତତ୍ପର ଥିଲେ । ମାତ୍ର ଏମାନଙ୍କ ଦଂଶନରୁ ମୁକ୍ତ ହେବାକୁ ସମସ୍ତଙ୍କ ମୁଣ୍ଡରେ ହେଲମେଟ ଓ ମୁଖମଣ୍ଡଳରେ କାଚର ଆବରଣ ରହିଥିଲା । ଏହା ବ୍ୟତୀତ ଦେହସାରା ରବର ପୋଷାକ ଓ ଗୋଡ଼ରେ ମୋଟା ଜୋତା ସବୁପ୍ରକାର ବିପତ୍ତିରୁ ସୈନ୍ୟମାନଙ୍କୁ ରକ୍ଷା କରୁଥିଲା ।



# ହାଡ ପାହାଡ଼ରେ ଆମେ

ଜଙ୍ଗଲର ପରିସ୍ଥିତି ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଥିଲା । ସନ୍ତସନ୍ତିଆ ଅଞ୍ଚଳ । ସୂର୍ଯ୍ୟାଲୋକ ଘଞ୍ଚ ଜଙ୍ଗଲ ବୃକ୍ଷଙ୍କ ପତ୍ର ଭେଦକରି ଭୂମିରେ କେବେ ହୁଏତ ପଡ଼ିନଥିଲା । ବୁଦା ବୁଦା ଗଛରେ ତଳ ଅଞ୍ଚଳ ପରିପୂର୍ଣ୍ଣ ଥିଲା । କଳା କୁତ୍ସିତ ରଙ୍ଗର ବାନର ସବୁ ଗୋଟିଏ ହାତରେ ଗଛ ଡାଳକୁ ଧରି ଓହଳି ଦାନ୍ତ କଡ଼ମଡ଼ କରୁଥିଲେ । ସନ୍ଧ୍ୟା ଆଗତ ଥିବାରୁ ଅନେକ ବାଦୁଡ଼ି ଉଡ଼ିବୁଲୁଥିଲେ । ସତେ ଯେପରି ସେମାନେ ବହୁ ସଂଖ୍ୟାରେ ଆସି ଆକ୍ରମଣ କରିବେ ଏହା ଜଣାପଡୁଥିଲା । ବିରାଟକାୟ ସାରୁ ପତ୍ର ଉପରେ ବସିଥିଲା ନାଲି ଗୁରୁଗୁରୁ ବେଙ୍ଗ । ବିଭିନ୍ନ ଆକୃତିର ବୁଢ଼ିଆଣି, ବହୁ ଜାତିର ବାନର, ହିଂସ୍ର କୁତ୍ସିତ ଏଣ୍ଡୁଅ, ଗଣ୍ଡା, ଭାଲୁ ଇତ୍ୟାଦି ଅତି ହିଂସ୍ର ଜନ୍ତୁଙ୍କର ଏହି ଜଙ୍ଗଲ ସତେ ଯେପରି ଲୀଳା କ୍ଷେତ୍ରଥିଲା । ଝିଙ୍କାରୀର ଝିଁ ଝିଁ ଶବ୍ଦ ସହିତ ଶୁଆ ଓ ଅନ୍ୟ ଅନେକ ଜାତିର ପକ୍ଷୀଙ୍କର କାକଳୀରେ ଭରପୂର ହୋଇ ପ୍ରକୃତି ରାଣୀର ବିଚିତ୍ରତା ପ୍ରତିପାଦନ କରୁଥିଲା ।

କ୍ୟାପ୍‌ଟେନ୍ ଏବଂ ତାଙ୍କ ଦଳର ସୈନ୍ୟମାନେ ପ୍ରତି ମୂହୁର୍ତ୍ତରେ ସତର୍କତା ଅବଲମ୍ବନ କରି ଆଗେଇ ଚାଲିଥିଲେ । ବହୁ ବିପଦ, ଅସୁବିଧା ଭିତରେ ସେମାନଙ୍କୁ ଆଗେଇବାକୁ ହେଉଥିଲା । ଅନେକ ସମୟରେ ଘଞ୍ଚ ଗଛ ପତ୍ରକୁ ସଫା କରିବାକୁ ହେଉଥିଲା । ଆଗରେ ଏକ ଜଳାଶୟ । ପଦ୍ମ ପତ୍ରରେ ଭରପୂର ଏହି ଜଳାଶୟରେ କାଁ ଭାଁ କିଛି ସ୍ଥାନ ଖାଲି ରହି ଜଳର ଉପସ୍ଥିତି ଦେଖାଉଥାଏ । ବିରାଟକାୟ ପଦ୍ମପତ୍ର ଉପରେ ଆରାମରେ ଦୁଇ ତିନିଟି ପକ୍ଷୀ ବସିରହି ସେମାନଙ୍କର କାର୍ଯ୍ୟ ସମାପନ କରୁଥାନ୍ତି । ରକ୍ତିମ ଆଭା ଓ ନୀଳରଙ୍ଗ ନେଇ ଫୁଟିଥିବା ବିରାଟକାୟ ପଦ୍ମ ଓ କଇଁ ଫୁଲ ସନ୍ଧ୍ୟା ଆଗତରେ ଅଧିକ ପ୍ରସ୍ଫୁଟିତ ହୋଇ ଚନ୍ଦ୍ରମାକୁ ସ୍ୱାଗତ କରିବାକୁ ଅପେକ୍ଷା କରିଥିବା ପରି ମନେ ହେଉଥିଲା । ଜଳାଶୟର ଚାରିଆଡ଼େ ଅନାବନା ଘାସ । ଏକ ବିରାଟକାୟ ଅଜଗର ପୋଖରୀ କୂଳରେ ପଡ଼ିରହି ବିଶ୍ରାମ କରୁଥାଏ । ଅନ୍ୟ ଏକ ଅଜଗର ଗଛ ଦେହରେ ନିଜର ଶରୀରକୁ ଗୁଡ଼ାଇ ଗୁଡ଼ାଇ ବୋଧହୁଏ ଖାଇଥିବା ଖାଦ୍ୟ ହଜମ କରୁଥାଏ । ଏତେ ବିରାଟକାୟ ଅଜଗର କ୍ୟାପ୍‌ଟେନ୍ ଓ ତାଙ୍କ ସାଥୀମାନେ ପୂର୍ବରୁ କେବେ

ଦେଖି ନଥିଲେ । ସେମାନେ ସତର୍କତାର ସହିତ ସେହି ସ୍ଥାନରୁ ଦୂରେଇ ଚାଲିଲେ । କାରଣ ଅଜଗର ମଣିଷର ଗନ୍ଧ ପାଇଲେ ଆଉ ରକ୍ଷା ନାହିଁ । ତା'ର ପ୍ରଖର ନିଶ୍ୱାସରେ ସେ ମଣିଷକୁ ନିଜ ନିକଟକୁ ଟାଣି ନେଇ ଅନାୟାସରେ ଗିଳିପାରିବ । ବିରାଟକାୟ ଅଜଗରକୁ ଦେଖି କେତେକ ଭୟଭୀତ



ହୋଇଯାଇଥିଲେ । ପୋଖରୀର ଗୋଟିଏ କୂଳ ପରିଷ୍କାର ଥିଲା । ଦଳାଚକଟା ହୋଇ ସେ ଅଞ୍ଚଳର ପଦ୍ମପତ୍ର ସବୁ ସଫା ହୋଇଯାଇଥିଲା ।

କିଏ ଜାଣେ ଏହି ଜଳାଶ୍ରୟ ଭିତରେ କି ପ୍ରକାର ବିଚିତ୍ର ଜୀବ ରହିଥିବ । ସାଗର ବକ୍ଷରେ ଜଳଦାନବର ଆକସ୍ମିକ ଆବିର୍ଭାବ ପରଠାରୁ ସମସ୍ତେ ଅତ୍ୟନ୍ତ ସତର୍କତାର ସହିତ କାର୍ଯ୍ୟ କରୁଥିଲେ । କ୍ୟାପ୍ଟେନ୍‌ଙ୍କ ନିର୍ଦ୍ଦେଶରେ ଏକ ପଥର ଖଣ୍ଡ ଆଣି ଜଣେ ସୈନିକ ନିକ୍ଷେପ କଲା ଜଳାଶ୍ରୟ ଭିତରକୁ । ପଥରର ଶବ୍ଦରେ ପାଣି ଥୋଡ଼ାଏ ଉଠିଗଲା ଆକାଶୁ ଆଉ ସାରା ଜଳାଶ୍ରୟରେ ଏକ ବିରାଟ ଲହରୀ ସୃଷ୍ଟି ହେଲା । ତା' ପରର ଦୃଶ୍ୟ ଅତୀବ ଭୟଙ୍କର ଥିଲା । ଏକ ସମୟରେ ପ୍ରାୟ କୋଡ଼ିଏ ତିରିଶିଟି ବିରାଟକାୟ ରକ୍ତମୁଖା କୁମ୍ଭୀର ମୁହଁ ଟେକି ଜଳାଶ୍ରୟ ଉପରକୁ ଉଠିଗଲେ । ସେମାନଙ୍କର ବିରାଟକାୟ ମୁଣ୍ଡ, ଜ୍ୱଳନ୍ତ ଆଖି ଓ ରକ୍ତିମ ତୀକ୍ଷ୍ଣ ଦାନ୍ତ ଦେଖି ଆଧିକାଂଶ ଭୟରେ ହତବାକ୍ ହୋଇ ପଡ଼ିଲେ ।

ଆଛିଯାଏ ସେହି ଜଳାଶ୍ରୟକୁ କୌଣସି ବ୍ୟକ୍ତି ବୋଧହୁଏ ଛୋଟ ଟେକୋଟାଏ ବି ଫିଙ୍ଗି ନ ଥିଲା । ଏକ ଅଜଣା ଶବ୍ଦର ପ୍ରତିଧ୍ୱନିରେ ସମସ୍ତେ ଏକାବେଳେ ଉପରକୁ ମୁହଁ ଦେଖାଇଲେ । ଏ ପ୍ରକାର ଭୟଙ୍କର ଜୀବ ପରିବେଷ୍ଟିତ ଦ୍ୱୀପରେ କ୍ୟାପ୍‌ଟେନ୍ ଓ ସାଥୀମାନଙ୍କୁ ସେହି କାଳରାତ୍ରି ହିଁ କଟାଇବାକୁ ହେବ । ଏହା ବ୍ୟତୀତ ଅନ୍ୟ ଗତି ନାହିଁ । ଉପକୂଳ ଓ ଜାହାଜ ଠାରୁ ସେମାନେ ବହୁ ଦୂରରେ । କ୍ୟାପ୍‌ଟେନ୍ କିନ୍ତୁ ସମସ୍ତ ବିଷୟ ବେତାର ଯୋଗେ ଜାହାଜକୁ ଜଣାଇ ଦେଉଥାନ୍ତି ଓ ଅଗ୍ରସର ହେଉଥାନ୍ତି ।

ଅନ୍ଧାର ଚାରିଆଡ଼େ ମାଡ଼ି ଆସିଲାଣି । ସେମାନେ ସେହି ଭୟଙ୍କର ଜଳାଶ୍ରୟ ତ୍ୟାଗ କରି ଆଗେଇବା ଦରକାର । କାରଣ ରାତ୍ରି ସମୟକୁ ହୁଏତ ବହୁ ମାରାତ୍ମକ ଜଳଜୀବ ଏହି ସ୍ଥାନକୁ ଆସିପାରନ୍ତି ଏବଂ ସେମାନଙ୍କୁ ଆକ୍ରମଣ କରିପାରନ୍ତି । ଯାହା ନିଷ୍ପତ୍ତି ନେବାକୁ ହେବ ଶୀଘ୍ର କରିବାକୁ ହେବ । ହାତରେ ଆଉ ସମୟ ନାହିଁ । କାଳରାତ୍ରିର ଆଗମନ ହୋଇ ସାରିଲାଣି । ଏକ ନିରାପଦ ସ୍ଥାନ ଅନ୍ୱେଷଣରେ ଥିଲେ କ୍ୟାପ୍‌ଟେନ୍ ।

କ୍ୟାପ୍‌ଟେନ୍‌ଙ୍କ ନିର୍ଦ୍ଦେଶରେ ସମସ୍ତେ ଆଗେଇଲେ ପଶ୍ଚିମ ଦିଗକୁ । ଆଗରେ ବିରାଟ ନୀଳ ପର୍ବତ । ପୋଖରୀ କୂଳରୁ କିଛିବାଟ ଗଲାପରେ ଏକ ଛୋଟ ପାହାଡ଼ ପଡ଼ିଲା । ସେମାନେ ସେ ପାହାଡ଼କୁ ଅତିକ୍ରମ କରିବେ କିପରି ? ଏହି ପାହାଡ଼ ଉପରକୁ ଚଢ଼ିବାକୁ ଚେଷ୍ଟାକରି ଦୁଇ ଚାରି ଜଣ ହଠାତ୍ ଖସି ଆସିଲେ ତଳକୁ । ସେମାନେ ଗୋଡ଼ ପକାଇଥିବା ମୃତ୍ତିକା ସେମାନଙ୍କ ଶରୀର ଭରା ନ ସମ୍ଭାଳି ତଳକୁ ଖସି ଆସୁଥିଲା । ସମସ୍ତେ ଚେଷ୍ଟା କରି ମଧ ବିଫଳ ହେଲେ । କ୍ୟାପ୍‌ଟେନ୍ ସେଠାରେ ଆସି ପହଁଞ୍ଚିଥିଲେ । ତାଙ୍କ ମସ୍ତକର ଟୋପୀ ଉପରେ ଲାଗିଥିବା ଉଜ୍ଜ୍ୱଳ ଟର୍ଚ୍ଚ ବତୀ ସଙ୍ଗେ ସଙ୍ଗେ ଜଳି ଉଠିଲା । ପରମୁହୂର୍ତ୍ତରେ ଯାହା ସମସ୍ତେ ଦେଖିଲେ ସେଥିରେ ସମସ୍ତଙ୍କ ଶରୀରରୁ ଶକ୍ତି ଉଭେଇଗଲା ପରି ଲାଗିଲା । ଶରୀରରୁ ଝାଳ ଗମ୍ ଗମ୍ ହୋଇ ବୋହିଗଲା ଓ ଲୋମମୂଳ ଟାଙ୍କୁରି ଉଠିଲା । ଜଙ୍ଗଲ ଜନ୍ତୁଙ୍କ କୋଳାହଳ ଭିତରେ ମଧ ସେମାନେ ସମସ୍ତେ ନିଜକୁ ଏକାନ୍ତ ନିସ୍ୱ ଓ ଅସହାୟ ମନେ କରୁଥିଲେ । ଏହା ସମ୍ପୂର୍ଣ୍ଣ ରୂପେ ଏକ ହାଡ଼ର ପାହାଡ଼ ଥିଲା । ଗଦା ଗଦା ବିରାଟକାୟ ଛୋଟ ବଡ଼ ହାଡ଼ରେ ଏହି ପାହାଡ଼ ଠିଆ ହୋଇଥିଲା । କିଛି ହାଡ଼କୁ ହାତରେ କାଢ଼ି ଫିଙ୍ଗି ଦେଲେ କ୍ୟାପ୍‌ଟେନ୍ । ତାଙ୍କର ଅନୁମାନ ଥିଲା ଯେ, ହୁଏତ ପାହାଡ଼ର ଉପରି

ଭାଗରେ କିଛି ହାଡ଼ ପଡ଼ି ଥାଇପାରେ । ମାତ୍ର ତାଙ୍କର ଅନୁମାନ ଭୁଲ ଥିଲା । ସମ୍ପୂର୍ଣ୍ଣ ପାହାଡ଼ଟି କେବଳ ହାଡ଼ରେ ହିଁ ଗଠିତ ହୋଇଥିଲା । ସେତେବଡ଼ ବିରାଟକାୟ ଜନ୍ତୁ ନହେଲେ ଏତେ ଜୀବଜନ୍ତୁଙ୍କୁ ଖାଇ ହାଡ଼ର ପାହାଡ଼ ସୃଷ୍ଟି କରିବା ଅସମ୍ଭବ । ତେବେ ଡିସୋଜା କହୁଥିବା ଦାନବ ଡ୍ରାଗନର ଉପସ୍ଥିତି ଯେକୌଣସି ମୁହୂର୍ତ୍ତରେ ହୋଇପାରେ । ଏହାହିଁ ତେବେ ସେହି ଡ୍ରାଗନର କାର୍ଯ୍ୟକଳାପ । ନିକଟରେ ଜଳାଶୟ ଥିଲା, ଏଣୁ ସେହି ବିରାଟକାୟ ରାକ୍ଷସ ଡ୍ରାଗନ ବୋଧହୁଏ ଏହି ସ୍ଥାନରେ ବସି ଖାଦ୍ୟ ଖାଇ ସାରି ଜଳପାନ କରୁଥିବାରୁ ଏଠାରେ ବର୍ଷ ପରେ ବର୍ଷ ହାଡ଼ ଗଦା ହୋଇ ଏହି ପାହାଡ଼ର ସୃଷ୍ଟି ହୋଇଛି । ନିକଟ ପୁଷ୍କରିଣୀର ଗୋଟିଏ ପାର୍ଶ୍ୱ ମଧ୍ୟ ଗଛ ବୃକ୍ଷ ଶୂନ୍ୟ ହୋଇ ସଫା ରହିଥିଲା ଏବଂ ସେହିଠାରୁ ହିଁ ରାକ୍ଷସ ଡ୍ରାଗନ ଜଳପାନ କରୁଥିଲା ।

ଖୁବ୍ ଶୀଘ୍ର ଏହି କାଳରାତ୍ରିରେ ଡ୍ରାଗନସହ ହୁଏତ ସେମାନଙ୍କର ସାକ୍ଷାତ ହେବ । ସେଥିପାଇଁ କିପରିଭାବେ ତାଙ୍କୁ ସାମନା କରାଯିବ ତାହା ହିଁ ଚିନ୍ତା କରୁଥିଲେ କ୍ୟାପଟେନ । ସେହି ସ୍ଥାନରୁ ଅତି ନିକଟରେ ରହିଲେ ତାକୁ ଦେଖିବା ସମ୍ଭବ ଏବଂ ପରେ ତାକୁ ଅନୁସରଣ କରି ହୁଏତ ସେହି ହତଭାଗ୍ୟ ଯୁବକର ସନ୍ଧାନ ମିଳିପାରେ । ନିଜର ଭୟାତୁର ସାଥୀମାନଙ୍କୁ ସାହସ ଦେଉଥିଲେ କ୍ୟାପଟେନ୍ । ସମସ୍ତେ ଏକତ୍ରିତ ହେଲେ । ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ରାକ୍ଷସ ଡ୍ରାଗନକୁ ଅପେକ୍ଷା କରିବା ବ୍ୟତୀତ ଅନ୍ୟ ପନ୍ଥା କିଛି ନଥିଲା । ସେମାନେ ଆଉ ଆଗକୁ ଆଗେଇ ଯିବାକୁ ପସନ୍ଦ କଲେ ନାହିଁ । କାରଣ ଆଗକୁ ଆଗେଇଲେ ହୁଏତ ବାଟରେ ଡ୍ରାଗନ ସହ ସାକ୍ଷାତ ହେଲେ ଅବସ୍ଥା ଅସମ୍ଭାଳ ହୋଇପାରେ । ମାତ୍ର ଏହିଠାରେ ଅତି ସୁସଜ୍ଜିତ ଭାବେ ପ୍ରସ୍ତୁତ ରହି ତା'ର ସାମନା କରି ତାକୁ ମାରିପାରିବା ହୁଏତ ସମ୍ଭବ ହୋଇପାରେ ।

କ୍ୟାପଟେନଙ୍କ ନିର୍ଦ୍ଦେଶରେ ସମସ୍ତେ ପ୍ରସ୍ତୁତ । ଷ୍ଟାଣ୍ଡ ଲାଗିଥିବା ବିରାଟକାୟ ମେସିନ୍‌ଗନ, ଷ୍ଟେନଗନ ଧରି ଦୁର୍ଦ୍ଧର୍ଷ ନୌ-ବାହିନୀର ବଛାବଛା ସୈନ୍ୟ ବିଭିନ୍ନ ଦିଗରୁ ପ୍ରସ୍ତୁତ । ସମସ୍ତେ ଉତ୍କଣ୍ଠିତ । ରାକ୍ଷସ ଡ୍ରାଗନ ସହ ସାକ୍ଷାତକୁ ସମସ୍ତଙ୍କର ଅପେକ୍ଷା । ରାତ୍ରିର ପ୍ରଥମ ପ୍ରହର ଅତିକ୍ରାନ୍ତ । ଜଙ୍ଗଲ ଜନ୍ତୁଙ୍କ ବିକଟ ରଡ଼ି, କୋଳାହଳ ଓ ଶବ୍ଦ ରାତ୍ରିର ନିସ୍ତବ୍ଧତାରେ ବ୍ୟାଘାତ ଘଟାଇ ମନରେ ଭୟ ସୃଷ୍ଟି କରୁଥାଏ ।



# ନିରାଶାର ଅନ୍ତନାହିଁ

ଡିସୋଜା ଓ କ୍ୟାପଟେନ୍ ବସିଥିଲେ ଗୋଟିଏ କଡ଼କୁ ଏକ ସୁବିସ୍ତୃତ ଓକ ଗଛ ମୂଳେ । ଗଛର ଗଣ୍ଡିକୁ ଆଉଜି ରହି ନିଜ ଚିରୁଟରେ ଅଗ୍ନି ସଂଯୋଗ କରୁକରୁ କ୍ୟାପଟେନ କହିଲେ, ମିଃ. ଡିସୋଜା ଆମର ଆକ୍ରମଣ ପଦ୍ଧତିରେ ତୁମେ ସନ୍ତୁଷ୍ଟ ତ ? ଡିସୋଜା ସମ୍ମତି ସୂଚକ ମୁଣ୍ଡ ହଲାଇଲେ । ମାତ୍ର ସେ ସୁଖୀ ନ ଥିଲେ । ସମସ୍ତେ ଏତେବେଳଯାଏ ସେହି ରାକ୍ଷସଜୀବ ବିଷୟରେ କଳ୍ପନାରେ ମଧ ଅନୁମାନ କରିନାହାଁନ୍ତି । ଯେତେ ପ୍ରକାର ଯୁଦ୍ଧ ପ୍ରସ୍ତୁତି ହେଲେ ମଧ ତାକୁ ଦେଖିବା ମାତ୍ରେ କାର୍ଯ୍ୟରେ କିଏ କ'ଣ କରିପାରିବେ ତାହା ହିଁ ମୁଖ୍ୟ ଚିନ୍ତାର ବିଷୟ ଥିଲା ।

ରାତ୍ରି ଏକ ପ୍ରହର ଶେଷ । ଚନ୍ଦ୍ରାଲୋକ ଆଗମନରେ ଘୋର ଅନ୍ଧକାର କ୍ରମେ ତୁଟି ଗଲାଣି । ସେଦିନ ସକାଳୁ ବାହାରି ଆସିଥିବା କ୍ୟାପଟେନ ଓ ତାଙ୍କ ସାଥୀମାନେ ଯାହା କିଛି ଖାଦ୍ୟଦ୍ରବ୍ୟ ପାଖରେ ଥିଲା ଖାଇନେଇଛନ୍ତି ଏହା ମଧରେ । ଶରୀର ଅବସ ପ୍ରାୟ । ଦିନ ଭିତରେ ସେ ବହୁ ଭୟଙ୍କର ପରିସ୍ଥିତି ଓ ବିପଦର ସମ୍ମୁଖୀନ ହୋଇସାରିଛନ୍ତି । ତାଙ୍କର କେତେକ ସାଥୀ ଏକପ୍ରକାର ମୃତ୍ୟୁ ମୁଖରୁ ତିଷ୍ଠି ଆସିଛନ୍ତି । ମନରେ ଉତ୍କଣ୍ଠା ଥିବାରୁ ନିଦ କାହାକୁ ଆସୁନାହିଁ । ମଧରାତ୍ରି ହେଲା ମାତ୍ର ଡ୍ରାଗନ କାହିଁ ? ସମସ୍ତେ ଆଗ୍ରହର ସହିତ ସେହି ଦାନବର ସମ୍ମୁଖୀନ ହେବାକୁ ପ୍ରସ୍ତୁତ । ଜଙ୍ଗଲରେ ଥଣ୍ଡା କ୍ରମେ ବଢ଼ି ଚାଲିଛି । କାକର ଟୁପଟାପ ହୋଇ ପଡୁଛି । ଖୁବ୍ ନିକଟରେ ବାଘ ଭାଲୁଙ୍କର ହେଣ୍ଟାଳ ଶୁଭୁଛି । ସବୁଆଡ଼ ନିସ୍ତବ୍ଧ । କେବଳ ଏହି ନିସ୍ତବ୍ଧତାରେ ବ୍ୟାଘାତ ଘଟାଇ ଝିଙ୍କାରୀର ଝିଁ ଝିଁ ଶବ୍ଦ କାନକୁ ବଧିରା କରି ଦେଉଛି ।

ସେହିପରି ସମସ୍ତେ ଉତ୍କଣ୍ଠିତ ଭାବେ ଅପେକ୍ଷା କରିଥାନ୍ତି । ରାତ୍ରିର ଶେଷ ପ୍ରହର ଆଗତ । ଆଉ ଅଳ୍ପ କେତେ ଘଣ୍ଟା ପରେ ସୂର୍ଯ୍ୟୋଦୟ ହେବ । ତଥାପି ସେହି ରାକ୍ଷସର ଦେଖାନାହିଁ । ସାରାଦିନ ଓ ରାତ୍ରିର ପଥଶ୍ରାନ୍ତ ଓ ଉଦ୍‌ବେଗ

ଜୀବନ ସଂଘର୍ଷ ଭିତରେ ସମସ୍ତର ଶରୀର ଅବସର । କ୍ୟାପଟେନଙ୍କ ବାରମ୍ବାର ତାଗିଦ ସତ୍ୱେ କେତେଜଣ ଘୁମାଇଲେଣି । ଅନେକ ବନ୍ଧୁକ ଛାଡ଼ି ବୁଜି ହୋଇ ଆସୁଥିବା ଚକ୍ଷୁକୁ ଖୋଲିବାକୁ ବାରମ୍ବାର ଚେଷ୍ଟା କରି ସେଥିରେ ଅସଫଳ ହେଉଛନ୍ତି । ମାତ୍ର ଡିସୋଜାଙ୍କ ଆଖିକୁ ନିଦ ନାହିଁ । ସିଗାରେଟ ପରେ ସିଗାରେଟ ଟାଣି ଚାଲିଛନ୍ତି ସେ । ଥରେ ଯିଏ ସେହି ରାକ୍ଷସର ସାମନା ହୋଇ ମୃତ୍ୟୁର କରାଳ ରୂପ ଦେଖିଥିବ ତା' ଆଖିକୁ କ'ଣ ଏତେ ଶୀଘ୍ର ନିଦ ଆସିବ ? କ୍ୟାପଟେନ ମଧ୍ୟ ନିରାଶ ହେଲେଣି । ସାରାରାତ୍ରି ଉଜାଗର ହୋଇ ମଧ୍ୟ ଡ୍ରାଗନର ଦେଖା ନାହିଁ । ଯାହା ହେଲେ ବି ସମସ୍ତଙ୍କୁ ସତର୍କତାର ସହ ଅପେକ୍ଷା କରିବାକୁ ହେବ । କେତେବେଳେ ହୁଏତ ତା'ର ଆବିର୍ଭାବ ହେବ କିଏ କହିବ ?

ଖଣ୍ଡିଆ ଚନ୍ଦ୍ରମା ନୀଳପର୍ବତର ଶୀର୍ଷକୁ ସ୍ପର୍ଶ କଲାଣି । ଆଉ କିଛି ସମୟ ପରେ ଚନ୍ଦ୍ରମାର ଉପସ୍ଥିତି ଜାଣି ହେବ ନାହିଁ । ଘଣ୍ଟା ଖୋଲି ଦେଖିଲେ କ୍ୟାପଟେନ । ରାତ୍ରି ଚାରିଟା ବାଜିବାକୁ ଯାଉଛି । ଆଜି ହୁଏତ ଆଉ ସେହି ରାକ୍ଷସଜୀବ ସହିତ ସାକ୍ଷାତ ହେବ ନାହିଁ । ହତାଶାରେ ଉପରକୁ ହାତଟେକି ହାଇ ମାରିଲେ କ୍ୟାପଟେନ । ମନରେ ଯେତେ ସାହସ ଥିଲେ ବି ସେ ବୟସ୍କ । ଶରୀରର ନିସ୍ତେଜତା ତାଙ୍କର ରହିଛି । ତାଙ୍କ ଚକ୍ଷୁରେ ମଧ୍ୟ ତନ୍ଦ୍ରାର ସୂଚନା ମାତ୍ର ସେ କୌଣସି ମତେ ତାକୁ ସମ୍ଭାଳି ରଖିଛନ୍ତି । ହଠାତ୍ କୌଣସି ପଶୁପକ୍ଷୀଙ୍କ ଶବ୍ଦ ଶୁଣାଗଲା ନାହିଁ । ଏକ ଉତ୍କଟ ଗନ୍ଧରେ କ୍ୟାପ୍‌ଟେନ୍ ନାକ ବୁଜିଲେ । ଡିସୋଜା ଏହି ମୁହୂର୍ତ୍ତକୁ ଅପେକ୍ଷା କରିଥିଲେ । ହଠାତ୍ ସେ କ୍ୟାପଟେନ୍‌କୁ କିଛି କହିଲେ । ମାତ୍ର ତାହା କ୍ୟାପଟେନ୍‌ଙ୍କୁ ଶୁଭିଲା ନାହିଁ ।



# ଡ୍ରାଗନ ସହିତ ସାକ୍ଷାତ

ବିରାଟ ଚିତ୍କାରରେ ସାରା ବନ ଭୂମି ପ୍ରକମ୍ପିତ ହେଲା । ସେହି ଚିତ୍କାର ଯେପରି ବିକଟାଳ ସେହିପରି କଠୋର ଓ ଭୟଙ୍କର ଥିଲା । ସେହି ଚିତ୍କାରରେ ସମସ୍ତ ସୈନ୍ୟ ହଠାତ ଚେଇଁ ଉଠିଲେ । ତାଙ୍କ ଆଗରେ ମୃତ୍ୟୁ ନିଜେ ଠିଆ ହୋଇଲାପରି ସେମାନେ ଅନୁଭବ କଲେ । ପୂର୍ବରୁ ଏପରି ବିକଟାଳ ଶବ୍ଦ କେହି ଶୁଣି ନଥିଲେ । କେତେକଙ୍କ କାନ ବଧିରା ହୋଇଗଲା । ଶବ୍ଦ ଖୁବ୍ ନିକଟରେ ଶୁଭୁଥିଲା । ବୋଧହୁଏ ହାଡ଼ ପାହାଡ଼ର ଅପର ପାର୍ଶ୍ୱରୁ ହିଁ ଶବ୍ଦ ଆସୁଥିଲା । ସମସ୍ତେ ପ୍ରସ୍ତୁତ । କେବଳ କ୍ୟାପଟେନ ଓ କମାଣ୍ଡର ରବୀନ ସ୍ମିଥ୍‌ଙ୍କ ନିର୍ଦ୍ଦେଶକୁ ଅପେକ୍ଷା ।

ସମସ୍ତଙ୍କୁ ଜଡ଼ କରି ଏକ ବିରାଟ ଦାନବ ପଶୁ କ୍ରମେ ଆଗେଇଲା ସେହି ପୋଖରୀ ଆଡ଼େ । ବୋଧହୁଏ ସେହି ଜନ୍ତୁ ସେମାନଙ୍କର ଉପସ୍ଥିତି ଉପଲବ୍ଧ କରିନାହିଁ । ତା'ର ରୂପ ଦର୍ଶନରେ କ୍ୟାପଟେନ୍‌ଙ୍କ ପରି ସାହାସୀ ବ୍ୟକ୍ତିଙ୍କର ରୁମ ମୂଳ ମଧ ଟାଙ୍କୁରୀ ଉଠିଲା, ସୈନ୍ୟମାନେ ହତୋସାହିତ ହେଲେ । ମାତ୍ର ଇଅର ଫୋନ ମାଧ୍ୟମରେ କ୍ୟାପଟେନ ସମସ୍ତଙ୍କୁ ସାହସ ବାଣୀ ଶୁଣାଉଥିଲେ । ଏହି ଜୀବକୁ ମାରି ପାରିଲେ ସାରା ବିଶ୍ୱରେ ସେମାନଙ୍କର ପ୍ରତିଷ୍ଠା କିଭଳି ଭାବେ ବୃଦ୍ଧି ପାଇବ ତାହା ସେ ସ୍ମରଣ କରାଇ ସୈନ୍ୟମାନଙ୍କୁ ପ୍ରୋତ୍ସାହନ ଦେଉଥିଲେ । ମାତ୍ର ସମସ୍ତେ ପ୍ରାୟ ଭୟ ପାଇଯାଇଥିଲେ । ଅନେକ ନାମକୁ ମାତ୍ର ସାହସ ଦେଖାଉଥିଲେ ମଧ ମୃତ୍ୟୁର ଅନ୍ୟନାମ ଏହି ଦାନବ ଡ୍ରାଗନକୁ ଦେଖିବା ପରେ କିଂକର୍ତ୍ତବ୍ୟମୂଢ଼ ହୋଇ ଯାଇଥିଲେ । ଧୀର ପାଦରେ ଚାଲିଛି ବିଶାଳକାୟ ଡ୍ରାଗନ । ବିରାଟ ମୁଣ୍ଡ । ଆଖି ଦୁଇଟିରୁ ରକ୍ତିମ ଆଲୋକର ବିଚ୍ଛୁରଣ । ଦାନ୍ତଗୁଡ଼ିକ ମଣିଷ ହାତର ଆଙ୍ଗୁଠି ପରି । ୬୦/୭୦ଟି ହାତୀକୁ ଯୋଡ଼ିଲେ ଯେତିକି ବଡ଼ ହେବ ତା'ର ଆକାର ପ୍ରାୟ ସେହିପରି । ତା' ନିକଟରେ ମଣିଷଗୁଡ଼ିକ ପ୍ରାୟ ପିମ୍ପୁଡ଼ିପରି । ଅନାୟସରେ ଏକଥରେ ୧୦/୨୦ଟି ମଣିଷଙ୍କୁ ସେହି ଦାନବ ହାତରେ ଟେକିନେଇ ପାରିବ ।

କ୍ୟାପଟେନ୍‌ଙ୍କ ହାତରେ ଅନ୍ୟ ପନ୍ଥା ନାହିଁ । ଦୀର୍ଘଶ୍ୱାସ ଛାଡୁଛି ସେହି ଡ୍ରାଗନ । ତାର ନିଶ୍ୱାସ ପ୍ରଶ୍ୱାସରୁ ବାହାରୁଥିବା ବାୟୁ ନିକଟସ୍ଥ ବୃକ୍ଷ ଡାଳକୁ ଥରାଇ ଦେଉଛି । ବର୍ତ୍ତମାନ ଡ୍ରାଗନର ସାମନା କରିବା ବ୍ୟତୀତ ଅନ୍ୟ ଉପାୟ

ନାହିଁ । ଫେରିବାର ପ୍ରଶ୍ନ ଉଠୁନାହିଁ । ଆଗରେ ଡ୍ରାଗନ । ତାକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ରହିବାକୁ ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ କ୍ୟାପଟେନ ଓ କମାଣ୍ଡର । ବହୁ ଯୁଦ୍ଧ ସୁଚାରୁ ରୂପେ ପରିଚାଳନା କରି ବିଜୟ ହାସଲ କରିଥିବା ବୟୋଜ୍ୟେଷ୍ଠ କ୍ୟାପଟେନ ରବୀନ ସ୍ମିଥ୍ ମଧ ଏକାବେଳେ ତା'ର ରୂପ ଦର୍ଶନରେ କିପରି ଭାବେ ତା' ସହିତ ଯୁଦ୍ଧ କରାଯିବ ସେହି ବିଷୟରେ ଚିନ୍ତା କରୁଥିଲେ । କଙ୍ଗାରୁ ଆକୃତିର ଏହି ଡ୍ରାଗନର ବିରାଟକାୟ ଦୁଇଟି ଗୋଡ । ଉପରକୁ ଦୁଇଟି ବିଶାଳ ହାତ ଏବଂ ଛୋଟ ବେକ ତା' ସହିତ ଏକ ବିକଟାଳ ମୁଣ୍ଡ ଓ ଜ୍ୱଳନ୍ତ ଆଖି । ବିରାଟ ଉଦର । ତା' ଦେହରୁ ବାହାରୁଥିଲା ଉତ୍କଟ ଗନ୍ଧ ।



ପୁଷ୍କରିଣୀ କୂଳେ ପାଣି ପିଉଥିଲା ଡ୍ରାଗନ । ଏହା ହିଁ କ'ଣ ଉତ୍କୃଷ୍ଟ ସମୟ ଆକ୍ରମଣ ପାଇଁ । ନାଁ ସେତେବେଳେ ଡ୍ରାଗନ କିଛି ଦୂରରେ ଥିଲା । ନିକଟକୁ ଆସିବାପରେ ହୁଏତ ଆକ୍ରମଣ ସୁବିଧା ହେବ । ସେଥିପାଇଁ ସମସ୍ତେ ପ୍ରସ୍ତୁତ ହୋଇ ଆକ୍ରମଣ ଆଦେଶକୁ ଅପେକ୍ଷା କରି ରହିଲେ । ଅନେକ ସେହି ରୂପ ଦେଖି ବିଶ୍ୱାସ କରିପାରୁ ନଥିଲେ । ସେମାନେ ଯାହା ଦେଖୁଛନ୍ତି ତାହା ଯେ କିପରି ଭୟଙ୍କର ତାହା ସମସ୍ତଙ୍କ କଳ୍ପନା ବାହାରେ ଥିଲା ।

●

# ଆକ୍ରମଣ

ପେଟେ ପାଣି ପିଇଲା ସେହି ଡ୍ରାଗନ୍ । ତା'ପରେ ଦୀର୍ଘଶ୍ୱାସ ଛାଡ଼ି ଚାଲିଲା ହାଡ଼ ପାହାଡ଼ ଦିଗକୁ । ରାତ୍ରି ପାହିବାର ସୂଚନା ମିଳିଲାଣି । ରାତ୍ରିଚର ଏହି ଡ୍ରାଗନ ହୁଏତ ଦିନରେ ଯାଇ ତାର ବାସସ୍ଥଳୀରେ ଆଶ୍ରୟ ନେବ । କ୍ରମେ ସେ କ୍ୟାପ୍‌ଟେନଙ୍କ ନିକଟରୁ ନିକଟତର ହେଲା । ବାଙ୍କ ବୁଲିବା ପୂର୍ବରୁ ସେ ନାକକୁଞ୍ଚନ କରି ସତେ ଯେପରି କିଛି ଆଘ୍ରାଣ କରୁଥିଲା । ବୋଧହୁଏ ମଣିଷଙ୍କ ଉପସ୍ଥିତି ବିଷୟରେ ସେ ସୂରାକ ପାଇଥିଲା । ଖୁବ୍ ନିକଟରେ ସେ ଗୋଟିଏ ମଣିଷକୁ ଧରିନେଇଥିବାରୁ ମଣିଷ ଦେହର ଗନ୍ଧ ସହିତ ପରିଚିତ ହୋଇ ସାରିଥିଲା ।

ଏହାହିଁ ପ୍ରକୃଷ୍ଟ ସମୟ । ସେହି ରାକ୍ଷସ ଡ୍ରାଗନର ସଂପୂର୍ଣ୍ଣ ଶରୀର ବର୍ତ୍ତମାନ କ୍ୟାପଟେନଙ୍କ ସମ୍ମୁଖରେ । ମୁଣ୍ଡଠାରୁ ପାଦଯାଏ । ମୋଡ଼ ବୁଲିଗଲେ ହୁଏତ ଏହି ସୁଯୋଗ ଆଉ ମିଳିବ ନାହିଁ । ଏହି ସୁବର୍ଣ୍ଣ ସୁଯୋଗକୁ ହାତଛଡ଼ା କରିବାର ନୁହେଁ । ନିକଟରେ ବସିଥିବା କମାଣ୍ଡରଙ୍କ ମତ ଲୋଡ଼ିଲେ କ୍ୟାପଟେନ । ସେ ମଧ୍ୟ ଏକମତ । କାରଣ ବର୍ତ୍ତମାନ ଏହି ରାକ୍ଷସ ଜୀବର ମୃତ୍ୟୁ ପରେ ହିଁ ଯାଇ ସେହି ହତଭାଗ୍ୟ ଯୁବକର ସନ୍ଧାନରେ ବାହାରିବାକୁ ହେବ । ଯେ ପର୍ଯ୍ୟନ୍ତ ଏହି ରାକ୍ଷସଜୀବ ବଞ୍ଚିଛି ସେ ଯାଏ ସେହି ଯୁବକର ସନ୍ଧାନ ନେବା ଅସମ୍ଭବ । ସେ କ'ଣ ଏହି ରାକ୍ଷସ ଜୀବ କବଳରୁ ଆଜିଯାଏ ବଞ୍ଚିଥିବ ! ଏସବୁ ଚିନ୍ତା କରିବାର ବର୍ତ୍ତମାନ ସମୟ ନୁହେଁ ।

କ୍ୟାପ୍‌ଟେନ ଆଦେଶ ଦେଲେ– ଫାୟାର । କୋଡ଼ିଏଟି ମେସିନ୍‌ଗନ୍‌ରୁ ଏକାବେଳେ ବଜ୍ର ଗମ୍ଭୀର ଶବ୍ଦ କରି ଫୁଟିଉଠିଲା ଶକ୍ତିଶାଳୀ ଗୋଳା । ଶାନ୍ତ ଜଙ୍ଗଲ ଭିତରେ କୋଳାହଳ ବ୍ୟାପିଗଲା ରାତ୍ରିର ଶେଷ ପ୍ରହରରେ । ସୁପ୍ତ ଜୀବଜନ୍ତୁ ଏ ପ୍ରକାର ଅତର୍କିତ ଶବ୍ଦରେ ଚେଇଁ ଉଠିଲେ ଓ ଆର୍ତ୍ତ ଚିତ୍କାର କଲେ । ପୁଷ୍କରିଣୀର କୁମ୍ଭୀର ପଲ ଉପରକୁ ବେକ ଟେକି ଘଟଣା ବିଷୟରେ ବୋଧ ହୁଏ

ଜାଣିବାକୁ ଚାହୁଁଥିଲେ । ମୃତ ପ୍ରାୟ ପଡ଼ିଥିବା ଅଜଗର ସାପ ବି ହଲଚଲ ହେବାର ଦେଖାଗଲା । ଅନତି ଦୂରରେ ଥିବା ଭିକ୍ଟୋରିଆ ଜାହାଜର ଲୋକେ ମଧ ଏ ପ୍ରକାର ଶବ୍ଦ ଶୁଣିଲେ । ସମୁଦ୍ର କୂଳରେ ଆହତ ଅବସ୍ଥାରେ ପଡ଼ିଥିବା ସୈନ୍ୟଦଳ ଏ ପ୍ରକାର ଏକ ସମୟରେ ଭୟଙ୍କର ଗୁଳିମାଡ଼ ଶୁଣି ଆତଙ୍କିତ ହେଲେ ।

ଏହି ଗୁଳିମାଡ଼ ସହିତ ଆଉ ଏକ ଆର୍ତ୍ତଚିତ୍କାର ଶୁଭିଲା । ଏହି ଭୟଙ୍କର ଚିତ୍କାର ଗୁଳିମାଡ଼ ଶବ୍ଦକୁ ଟପିଗଲା । ବିକଟାଳ ପିଶାଚର ଶବ୍ଦପରି ଏହି ଶବ୍ଦ ଯେପରି ଭୟଙ୍କର ସେହିପରି ଲୋମହର୍ଷଣକାରୀ । ବିରାଟ ଦାନବ ଡ୍ରାଗନ କିନ୍ତୁ ଚିତ୍କାର କରି ଚାଲିଥିଲା ଅତି କ୍ରୁର, ବିକଟାଳ ଭାବରେ । ତାର ମୁଖମଣ୍ଡଳ ସଂପୂର୍ଣ୍ଣ ରୂପେ ଖୋଲିଯାଇ ଦାନ୍ତଗୁଡ଼ିକ ପରିଷ୍କାର ଦିଶୁଥିଲା । ସେ ଯେପରି ଅଟ୍ଟହାସ୍ୟ କରୁଥିଲା ଏହା ହିଁ ଜଣାପଡୁଥିଲା । ଏହି ଗୁଳିଗୁଡ଼ିକ ତା ଦେହରେ ବାଜି ତତ୍‌କ୍ଷଣାତ ତଳକୁ ଖସିପଡୁଥିଲା । ଏକ ବିରାଟ ପାହାଡ଼ ଦେହକୁ ଏକ କ୍ଷୁଦ୍ର ଟୋକା ଫୋପାଡ଼ିଲେ ତାହା ଯେପରି ଖଣ୍ଡ ବିଖଣ୍ଡିତ ହୋଇଥାଏ ଓ ତାର କିଛି ଅସ୍ତିତ୍ୱ ରହେ ନାହିଁ, ସେହି ଅବସ୍ଥା ହିଁ ଘଟିଥିଲା । ଡ୍ରାଗନର ଶରୀରର ଚମଡ଼ା ହାତୀ ଶରୀର ଠାରୁ ବହୁ ଗୁଣରେ ମୋଟା ଥିବାରୁ ଶକ୍ତିଶାଳୀ ଗୁଳି ଏହାକୁ ଭେଦ କରି ପାରୁନଥିଲା । ଗୁଳିଗୁଡ଼ିକ ଏହା ଶରୀର ଉପରେ ମାଡ଼ ହୋଇ ତଳକୁ ଖସି ପଡୁଥିଲା ଓ ଡ୍ରାଗନ ତାହା ହାତରେ ସଫା କରି ବିରାଟ ଅଟ୍ଟହାସ୍ୟ କରି ଆଗେଇ ଆସୁଥିଲା ।

ଏ ପ୍ରକାର ଅବସ୍ଥା ଘଟିବ ବୋଲି କେହି କଳ୍ପନା ବି କରିନଥିଲେ । ଆଗକୁ ଆଗକୁ ଅଟ୍ଟହାସ୍ୟ ଓ ଚିତ୍କାର କରି ମାଡ଼ି ଆସୁଛି ରାକ୍ଷସ ଡ୍ରାଗନ । ସମ୍ମୁଖରେ ତାର ତୁଚ୍ଛ ମାନବଦଳ । କ୍ରୋଧୀ, ପରାକ୍ରମୀ ଡ୍ରାଗନ ମୁହଁରେ କ'ଣ ଆଜି ସମସ୍ତଙ୍କର ମୃତ୍ୟୁ ଘଟିବ । ଭାବିବାକୁ ସମୟ ନଥିଲା । ବାରମ୍ବାର ଗୋଳାବାରୁଦ ମାଡ଼ ସତ୍ତ୍ୱେ ସେହି ଡ୍ରାଗନର ଟିକେ ବି କୌଣସି ସ୍ଥାନରେ କ୍ଷତ ସୃଷ୍ଟି ହୋଇନଥିଲା । ଅପରପକ୍ଷେ ଡ୍ରାଗନ ଅଧିକ ଉତ୍ତେଜିତ ହୋଇ କାଳ ଯମ ପରି ତାଙ୍କରି ଆଡ଼କୁ ମାଡ଼ି ଚାଲିଥିଲା । ସୈନ୍ୟମାନେ ନିରୁତ୍ସାହିତ ହୋଇ ସାରିଥିଲେ । ଆଉ ପନ୍ଦର କୋଡ଼ିଏ ଫୁଟ ଦୂରରେ ରାକ୍ଷସ ଡ୍ରାଗନ । କ୍ୟାପଟେନ ଓ କମାଣ୍ଡରଙ୍କ ନିର୍ଦ୍ଦେଶ ଡ୍ରାଗନର ବିକଟାଳ ଚିତ୍କାର ଭିତରେ କାହାକୁ ଶୁଭୁନଥିଲା ।

କେତେବ ଜୀବନ ବଞ୍ଚାଇବାକୁ ବନ୍ଧୁକ ଇତ୍ୟାଦି ଛାଡ଼ି ଘୋର ଜଙ୍ଗଲ ଭିତରକୁ ପଳାୟନ କରିଥିଲେ । ପ୍ରଥମେ ଜୀବନ ବଞ୍ଚାଇବାକୁ ହେବ । ଆଉ ସମୟ ନାହିଁ, ଆଗରେ ରାକ୍ଷସ । ଯାହା କରିବାକୁ ହେବ, ତତ୍କ୍ଷଣାତ କରାଯିବା ଦରକାର । କ୍ୟାପଟେନ ଦେଖିଲେ ଯେ ତାଙ୍କ ନିକଟରେ ଡିସୋଜା ଠିଆ ହୋଇ ଥରୁଛନ୍ତି, ଏଥର ମୃତ୍ୟୁ ନିଶ୍ଚିତ ଜାଣି ସେ ସେଥିପାଇଁ ଅଧିକ ଭୟାତୁର ହୋଇ ଯାଇଛନ୍ତି । ନିକଟରେ କମାଣ୍ଡରଙ୍କର ମଧ ସେହି ଅବସ୍ଥା । ଅଳ୍ପ କେତେ ଜଣ ସୈନ୍ୟ ସେତେବେଳଯାଏ ବନ୍ଧୁକ ଚାଳନା କରି ଚାଲିଛନ୍ତି, ମାତ୍ର ତାର ସୁଫଳ ମିଳୁନଥିବାରୁ ସେମାନେ ମଧ ହତୋତ୍ସାହିତ ହୋଇ ସାରିଲେଣି । ସେମାନଙ୍କୁ ଆକଟକରି ଆଉ ନିର୍ଦ୍ଦେଶ ଦେବା ସମ୍ଭବ ନୁହେଁ ।

ହଠାତ୍ କ୍ୟାପଟେନଙ୍କ ହାତରେ ଶକ୍ତିଶାଳୀ ରିଭଲଭର ଗର୍ଜି ଉଠିଲା । ନିଜର ମୁଣ୍ଡ ଉପରକୁ ଲକ୍ଷ୍ୟ କରି ସେ ଗୁଳି ଚଳାଉଥିଲେ । କାରଣ ତାଙ୍କ ଆଗରେ ଏକ ଛୋଟ ନଡ଼ିଆଗଛ ପରି ଠିଆ ହୋଇଥିଲା ସେହି ଦାନବ ରାକ୍ଷସ ଡ୍ରାଗନ । ତାଙ୍କର ଲକ୍ଷ୍ୟ ଅବ୍ୟର୍ଥ ଥିଲା । ତାଙ୍କର ଗୁଳି ଡ୍ରାଗନର ଗୋଟିଏ ଚକ୍ଷୁରେ ଆଘାତ କଲା । ବାଲଟି ବାଲଟି ରକ୍ତର ଧାର ଛୁଟିଲା ଆଖିରୁ । ଶରୀରର ଅନ୍ୟ ଅଂଶ ମୋଟା ଓ ଗୁଳିବଦ୍ଧ ପାଇଁ ଅନୁପଯୁକ୍ତ ଥିବା ବେଳେ ଚକ୍ଷୁପରି କୋମଳ ସ୍ଥାନକୁ ଗୁଳିବଦ୍ଧ କରିବାରେ କୌଣସି ଅସୁବିଧା ନଥିଲା । ଏ କଥା ଚିନ୍ତାକରି କ୍ୟାପଟେନ ତତ୍କ୍ଷଣତା ତାହା କାର୍ଯ୍ୟକାରୀ କରିଥିଲେ ।

ଆର୍ତ୍ତ ଚିତ୍କାର କରି ଉଠିଲା ଡ୍ରାଗନ । ଏବଂ ତା'ର ଚିତ୍କାର ଓ ପ୍ରଳାପରେ ସମଗ୍ର ବନଭୂମିରେ ବିଭୀଷିକା ଦେଖାଦେଲା । ଗୁଳିମାରିବା ପରେ ଜୀବନ ବଞ୍ଚାଇବାକୁ କ୍ୟାପଟେନ ଓ ଅନ୍ୟମାନେ ଧାଇଁଥିଲେ ଘଞ୍ଚ ଜଙ୍ଗଲ ଭିତରକୁ ଏବଂ ଘଞ୍ଚ ଜଙ୍ଗଲର ବୁଦା ଭିତରେ ଲୁଚିଯାଇଥିଲେ । କିଏ କୁଆଡ଼େ ଗଲେ ସେ ବିଷୟରେ ଚିନ୍ତା କରିବାକୁ କାହାର ସମୟ ନଥିଲା ।

ଆହତ ଡ୍ରାଗନର ଚିତ୍କାରରେ ସାରା ବନଭୂମି ଆନ୍ଦୋଳିତ ହେଲା । ଦୂରରୁ ମଧ ସେହିପରି ଆଉ ଏକ ବିକଟାଳ ରଡ଼ି ଶୁଭିଲା । ତା'ର ଆନ୍ଦୋଳିତ ଶରୀର ମାଡ଼ରେ ବହୁ ବୃହତ ବୃକ୍ଷ ଧରାଶାୟୀ ହେଲେ । ସେହି ଖଣ୍ଡ ମଣ୍ଡଳରେ ବିପର୍ଯ୍ୟୟ ଓ ବିଭୀଷିକା ସୃଷ୍ଟିକରି ଆହତ ଡ୍ରାଗନ ଧାଇଁଲା ନୀଳ ପର୍ବତ ଆଡ଼କୁ । ତାକୁ

ପିଛା କରିବାକୁ କ୍ୟାପଟେନଙ୍କର ସାହସ ନଥିଲା । କିଛି ଦୂରରେ ସ୍ୱଚକ୍ଷୁରେ ଦେଖୁଥିଲେ କ୍ୟାପଟେନ ଡ୍ରାଗନର କାର୍ଯ୍ୟକଳାପ । ସେମାନେ ରହି ଗୁଳି ଚଳାଉଥିବା ସ୍ଥାନ ଏକପ୍ରକାର ଛିନ୍ନଛତ୍ର ହୋଇଯାଇଥିଲା । ବନ୍ଧୁକ ଗୁଡ଼ିକୁ ସେହି ରାକ୍ଷସ ଡ୍ରାଗନ ହାତରେ ଧରି ଭାଙ୍ଗିଦେଇ ଦୂରକୁ ଫିଙ୍ଗି ଦେଇଥିଲା । କ୍ୟାପଟେନ୍ ଚିନ୍ତା କରୁଥିଲେ ଯଦି ସେତେବେଳେ ସେମାନେ ସେଠାରେ ଥାନ୍ତେ ତେବେ ସେମାନେ କେବଳ ଡ୍ରାଗନର ପାଦତଳେ ଚାପି ହୋଇ ମୃତ୍ୟୁବରଣ କରିଥାନ୍ତେ । ଜୀବନରେ ବହୁ ପ୍ରକାର ବିପଦର ସମ୍ମୁଖୀନ ହୋଇଥିଲେ ମଧ୍ୟ ଏପ୍ରକାର ଲୋମହର୍ଷଣକାରୀ ବିଭୀଷିକା ତାଙ୍କ ଜୀବନରେ କେବେ ଆସିନଥିଲା । ଦୂରରୁ ଆହତ ଡ୍ରାଗନର ଚିତ୍କାର ଶୁଭୁଥିଲା । ବୋଧହୁଏ ତାହା କିଛି ଦୂରକୁ ଚାଲିଯାଇଥିଲା । ମୁଣ୍ଡା ମୁଣ୍ଡା ରକ୍ତ ସେ ସ୍ଥାନକୁ କର୍ଦ୍ଦମାକ୍ତ କରିଥିଲା ।

ସେତେବେଳେ ସକାଳ ହୋଇ ସାରିଥିଲା । ମାତ୍ର ସକାଳର ଆଗମନ ସହିତ ପଶୁପକ୍ଷୀଙ୍କ କୋଳାହଳ ସେଦିନ ନଥିଲା । ସବୁ ଯେପରି ସେହି ରାକ୍ଷସ ଡ୍ରାଗନର ଚିତ୍କାରରେ ବନ୍ଦ ହୋଇଯାଇଥିଲା ।

କ୍ୟାପଟେନ ହୁଇସିଲ ବଜାଇ ସୈନ୍ୟମାନଙ୍କୁ ଏକତ୍ରିତ ହେବାକୁ ନିର୍ଦ୍ଦେଶ ଦେଲେ । ସେମାନଙ୍କ ମଧ୍ୟରୁ ଅନେକ ବେହୋସ ହୋଇ ଯାଇଥିଲେ । କେତେକ ମୃତପ୍ରାୟ ହୋଇଥିଲେ ଓ କେତେକଙ୍କ କାନକୁ ଶୁଭୁ ନଥିଲା । ତଥାପି ସମସ୍ତଙ୍କୁ ଏକାଠି କରି ସାହସ ଦେଲେ କ୍ୟାପ୍‌ଟେନ । ଅନ୍ତତଃ ସମସ୍ତଙ୍କୁ ତାଙ୍କର ବିଚକ୍ଷଣ ବୁଦ୍ଧି ଯୋଗୁ ବଞ୍ଚାଇ ପାରିଥିବାରୁ ଡିସୋଜା ଓ କମାଣ୍ଡର ପ୍ରମୁଖ ତାଙ୍କୁ ଧନ୍ୟବାଦ ଦେଉଥିଲେ ।

ପୂର୍ବଦିଗୁ ସାଗର ବକ୍ଷରେ ସୂର୍ଯ୍ୟ ଉଇଁ ଦିନର ଆଗମନର ସୂଚନା ଦେଲା । କ୍ୟାପଟେନ ଓ ଅନ୍ୟମାନଙ୍କ ମନରେ ସାହସ ଆସିଲା । ବର୍ତ୍ତମାନ ସେମାନେ କାଳରାତ୍ରିକୁ ପାରି ହୋଇ ସାରିଛନ୍ତି । ସାଗର ବକ୍ଷରେ ଆହତ ଡ୍ରାଗନ, ସ୍ଥଳଭାଗରେ ମଧ୍ୟ ଆହତ ଡ୍ରାଗନ ଘେରରେ ସେମାନେ ଏକପ୍ରକାର ବନ୍ଦୀପ୍ରାୟ ରହିଥିଲେ । ଯାହା କିଛି ଖାଦ୍ୟ ଓ ପାନୀୟ ଥିଲା କ୍ୟାପଟେନ୍‌ଙ୍କ ନିର୍ଦ୍ଦେଶରେ ସମସ୍ତେ ଖାଇ ନେଲେ ଓ ଟିକେ ସୁସ୍ଥ ହେଲେ । କ୍ୟାପଟେନ ଓ ଅନ୍ୟମାନେ ଡିସୋଜାଙ୍କ ବର୍ଣ୍ଣନାର ନିଛକ ସତ୍ୟତା ଉପଲବ୍ଧି କରୁଥିଲେ ଏବଂ

ତାଙ୍କର ସାହସକୁ ପ୍ରଶଂସା କରୁଥିଲେ । ସେମାନେ ଏକାଠି ଏତେ ଲୋକ ଥାଇ ଓ ଅତ୍ୟାଧୁନିକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ଥାଇ ମଧ୍ୟ ଡ୍ରାଗନକୁ ମାରି ନପାରିବାଠାରୁ ଆଉ ଲଜ୍ଜ୍ୟାକର ବିଷୟ କ'ଣ ହୋଇପାରେ । କିନ୍ତୁ ଏ ପ୍ରକାର ଏକ ଆଶ୍ଚର୍ଯ୍ୟ ଜନ୍ତୁକୁ ସେମାନେ ପ୍ରଥମ ଥର ପାଇଁ ଦେଖିଥିଲେ ଓ ତା' ବିଷୟରେ ପୂର୍ବରୁ ସଂପୂର୍ଣ୍ଣ ଅନଭିଜ୍ଞ ଥିଲେ । କ୍ୟାପଟେନ ସେମାନଙ୍କୁ ସାହସ ଦେଉଥିଲେ ଓ ଭବିଷ୍ୟତ କାର୍ଯ୍ୟପନ୍ଥା ବିଷୟରେ କମାଣ୍ଡର ଓ ଡିସୋଜାଙ୍କ ସହ ଆଲୋଚନା କରୁଥିଲେ ।



# ହତଭାଗ୍ୟ ଯୁବକ ସନ୍ଧାନେ

ଦିବସର ଆଗମନ ସହିତ ସମସ୍ତେ ଟିକେ ସୁସ୍ଥ ହେଲେ । ସେହି ଅଚିହ୍ନା, ଭୟଙ୍କର ଦ୍ୱୀପରେ ଦିବସ ଓ ରାତ୍ରି ମଧ୍ୟରେ ଅନେକ ପ୍ରଭେଦ । ଦିନରେ ସେମାନେ ଡ୍ରାଗନର ଅବସ୍ଥିତି ବିଷୟରେ ସୁବିଧାରେ ଜାଣିପାରିବେ ଓ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିବେ ।

ଆହତ ଡ୍ରାଗନର ଅବସ୍ଥା କଣ ହେଲା ସେ ବିଷୟରେ ପ୍ରଥମେ ଅନୁସନ୍ଧାନ କରିବାକୁ କ୍ୟାପ୍‌ଟେନ ସ୍ଥିର କଲେ, ତା'ପରେ ଆହତ ଯୁବକକୁ ଖୋଜିବା କାମ ଆରମ୍ଭ କରିବାକୁ ହେବ । ପ୍ରାୟ ଘଣ୍ଟାକ-ପୂର୍ବରୁ ଦୂରରୁ ଅସ୍ପଷ୍ଟ ଭାବେ ଶୁଭୁଥିବା ଆହତ ଡ୍ରାଗନର ଚିତ୍କାର ଏବେ ପ୍ରାୟ ବନ୍ଦ ହୋଇଗଲାଣି । କ୍ୟାପଟେନ ଲକ୍ଷ୍ୟ କଲେ ଯେ ରକ୍ତ ବିନ୍ଦୁ ରାସ୍ତାରେ ଧାର ଧାର ହୋଇ ପଡ଼ିଛି । ବହୁ ଜଙ୍ଗଲ ବୃକ୍ଷର ପତ୍ର ମଧ୍ୟ ମୁଣ୍ଡା ତାଜା ରକ୍ତରେ ଲାଲ ହୋଇ ଯାଇଛି । ସାଥୀଙ୍କ ସହିତ ସେହି ଡ୍ରାଗନକୁ ଅନୁସରଣ କରିବାକୁ ସ୍ଥିର କଲେ କ୍ୟାପଟେନ । ମାତ୍ର ଏଥିରେ ବିପଦ ଗୋଡ଼େ ଗୋଡ଼େ ରହିଛି । ସାଧାରଣ ଜୀବଠାରୁ ଆହତ ଜୀବ ଅତି ଭୟଙ୍କର । ଏବେ ସେହି ଆହତ ଜୀବ ହାବୁଡ଼େ ପଡ଼ିଲେ ମୃତ୍ୟୁ ଯେ ସୁନିଶ୍ଚିତ ଏହା କାହାକୁ ଅଜଣା ନଥିଲା । ମାତ୍ର ସବୁବେଳେ ଦୁଃସାହସିକ କାର୍ଯ୍ୟକରି ଜୀବନସାରା ଆଗେଇ ଆସୁଥିବା କ୍ୟାପଟେନ ଏଥିପାଇଁ ତିଳେହେଲେ କୁଣ୍ଠାବୋଧ ନକରି ଆଗେଇବାକୁ ନିଷ୍ପତ୍ତି ନେଲେ । ଡ୍ରାଗନର ସ୍ୱରରୁ ଯାହା ଜଣାପଡୁଥିଲା ସେ ହୁଏତ ବେଶୀ ଦୂର ଯାଇନଥିବ । ରକ୍ତ ଧାରକୁ ଅନୁସରଣ କରି ଆଗଉଥିଲେ କ୍ୟାପଟେନ ଓ ତାଙ୍କ ସୈନ୍ୟ ଦଳ । ଡ୍ରାଗନ ଯାଇଥିବା ରାସ୍ତା ଏକପ୍ରକାର ସଫା ହୋଇଯାଇଥିଲା । କିଛି ଦୂର ଯିବାପରେ ଘଞ୍ଚ ଜଙ୍ଗଲ, ସେହିଠାରେ ରକ୍ତଧାର ବନ୍ଦ ହୋଇ ଯାଇଛି । ଆଉ ରକ୍ତର କୌଣସି ଚିହ୍ନ ଦେଖାଗଲା ନାହିଁ । ସେ ଅଂଚଳରେ କୌଣସି ଜୀବଜନ୍ତୁଙ୍କର ଚିହ୍ନବର୍ଣ୍ଣ ମଧ୍ୟ ନାହିଁ । ସେହିଠାରୁ ଆରମ୍ଭ ହୋଇଛି ନୀଳ ପର୍ବତର ଉପତ୍ୟକା । ବିରାଟକାୟ ପଥର ଖଣ୍ଡ ସବୁ ସେଠାରେ ପଡ଼ିରହିଛି କେଉଁ ଅନାଦି କାଳରୁ, ତା'ର ହିସାବ କେହି ରଖିନାହିଁ । ଘଞ୍ଚ,

କଣ୍ଟକିତ ବୁଦା ଓ ଦୁର୍ଗମ ପଥରେ ଆଗକୁ ଆଉ ଯିବା ସମ୍ଭବ ନୁହେଁ । ଆଶ୍ଚର୍ଯ୍ୟ ହେଲେ କ୍ୟାପଟେନ । ତେବେ ଏଠାରୁ ଡ୍ରାଗନ କ'ଣ ଉଭେଇ ଗଲା । ସେ କୁଆଡ଼କୁ ଯାଇପାରେ ଏ ବିଷୟରେ ଚିନ୍ତା କରୁଥିଲେ କ୍ୟାପଟେନ ।

ଦୂରରେ ହାଡ଼ ପାହାଡ଼ ଉପରେ ସୂର୍ଯ୍ୟାଲୋକ ବିଛୁରିତ ହୋଇ ସାରି ଚିକ୍‌ଚିକ୍ କରୁଛି । ଡ୍ରାଗନ ଖାଦ୍ୟରୂପେ ବ୍ୟବହାର କରିଥିବା ବିଭିନ୍ନ ଜୀବଜନ୍ତୁଙ୍କ ହାଡ଼ ଏଠାରେ ମଧ୍ୟ କୁଢ଼ କୁଢ଼ ହୋଇ ଗଦା ହୋଇ ରହିଥିଲା । ସେହି ଆହତ ଯୁବକ ଓ ଡ୍ରାଗନ କାହାରି କିଛି ସନ୍ଧାନ ନମିଳିବାରୁ କ୍ୟାପଟେନ ଓ ଅନ୍ୟମାନେ ନିରାଶ ହେଲେ । ଉପାୟ କଣ ? କ୍ୟାପଟେନ ମତ ଦେଲେ ଯେ ଏକ କମାଣକୁ ନୀଳପର୍ବତ ଉପରକୁ ମରାଯିବ ଏବଂ ଏହାର ଶବ୍ଦ ଶୁଣିବାମାତ୍ରେ ଡ୍ରାଗନ ଯେଉଁଠି ଥିଲେ ବି ନିଶ୍ଚ ଦେଖାଦେବ ନଚେତ ତାର ଅବସ୍ଥା ବିଷୟରେ ସମସ୍ତେ ହୁଏତ ସଚେତନ ହୋଇପାରିବେ ।

ଏହା ପୂର୍ବରୁ କ୍ୟାପଟେନ ସମସ୍ତଙ୍କୁ ନିର୍ଦ୍ଦେଶ ଦେଇ ସାରିଥିଲେ ଡ୍ରାଗନ ମୁଖମଣ୍ଡଳ ଓ କାନ କିମ୍ବା ଚକ୍ଷୁକୁ କେବଳ ଲକ୍ଷ୍ୟ କରି ଗୁଳି ଚଳାଇବାକୁ । କାରଣ ଏହି କୋମଳ ସ୍ଥାନ ବ୍ୟତୀତ ଡ୍ରାଗନର ଶରୀରରେ ଅନ୍ୟ ଯେକୌଣସି ସ୍ଥାନରେ ଗୁଳି ବାଜିଲେ ବି ତାର ମୃତ୍ୟୁ ହେବା ଆଦୌ ସମ୍ଭବ ନୁହେଁ ।

ନୀଳପର୍ବତର ସବୁଜିମା ଓ ଶୋଭା ଦେଖୁଥିଲେ କ୍ୟାପଟେନ । ପର୍ବତ ଶିଖରରୁ ଝରି ଆସୁଛି ଏକ ଛୋଟ ନିର୍ଝରିଣୀ । ପର୍ବତ ସେ ପାଖରେ କଣ ଅଛି କାହାକୁ ଜଣା ନାହିଁ । ପର୍ବତର ଉପର ଏତେ ଘଞ୍ଚ ଯେ ଏହାର କୌଣସି ଅଂଶର ମାଟି ଦେଖିବା ସମ୍ଭବ ନୁହେଁ ।

ସମସ୍ତେ ପ୍ରସ୍ତୁତ । କ୍ୟାପଟେନଙ୍କ ନିର୍ଦ୍ଦେଶରେ କମାଣରୁ ଗୋଳା ବର୍ଷଣ କରାଗଲା । ମେଘ ଗର୍ଜନଭଳି ବାରମ୍ବାର ଗୋଳା ଯାଇ ନୀଳ ପର୍ବତ ଦେହରେ ମାଡ଼ ହୋଇ ବିରାଟକାୟ ପ୍ରତିଧ୍ୱନି ସୃଷ୍ଟିକଲା ।

ଥରେ, ଦୁଇଥର, ତିନିଥର ଏପରି ବାରମ୍ବାର ଗୋଳା ଫୁଟିଲା । ଏକ ବିରାଟକାୟ ପଥର ଦେହରେ ଗୋଡ଼ ଦେଇ ଠିଆ ହୋଇଥିଲେ କ୍ୟାପଟେନ ଏବଂ କମାଣ୍ଡର ରବୀନ । ଶକ୍ତିଶାଳୀ ବାଇନାକୁଲାର ସାହାଯ୍ୟରେ ତନ୍ନ ତନ୍ନ କରି ପର୍ବତ ଶଯ୍ୟାକୁ ପରୀକ୍ଷା କରି ଚାଲିଥିଲେ ।

ହଠାତ କ୍ରୁର ଗର୍ଜନ ଶୁଭିଲା ଓ କ୍ୟାପଟେନ ଗୋଡ଼ ଭରା ଦେଇ ଠିଆ ହୋଇଥିବା ପଥର ଖଣ୍ଡକ ଭୂମିକମ୍ପରେ ଦୋଦୁଲ୍ୟମାନ ହେବାଭଳି ଥରି ଉଠିଲା । କ୍ୟାପଟେନ ହଠାତ ପଛକୁ ଦୌଡ଼ିବାକୁ ଲାଗିଲେ ଓ ସହକର୍ମୀଙ୍କୁ ଘୁଞ୍ଚି ଆସିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ଏତେ ଶିଘ୍ର ଏହା ସବୁ ଘଟିଲା ଯେ ଲୋକେ ତତ୍‌କ୍ଷଣାତ୍‌ ଏହା କରି ପାରିଲେ ନାହିଁ । ବିରାଟକାୟ ପଥର ଖଣ୍ଡ ଗୋଟିଏ କଡ଼କୁ ମାଡ଼ିରହିଲା ଏବଂ କ୍ୟାପଟେନ ଏହି ପଥର ଚାପାରୁ ବଞ୍ଚିଗଲେ



ସୁଦ୍ଧା ଜଣେ ସୈନିକ ଏହା ତଳେ ଚାପିହୋଇ ରହି ଯାଇଥିଲା ଓ ଜୀବନ ରକ୍ଷା କରିବାକୁ ଚିତ୍କାର କରୁଥିଲା । ହଠାତ ପଥରକୁ କଡ଼କୁ ଠେଲି ଠିଆହେଲା ସେହି ରାକ୍ଷସ ଡ୍ରାଗନ । ଭୀଷଣ, ଭୟଙ୍କର, ରକ୍ତିମ ଜ୍ୱଳନ୍ତ ଚକ୍ଷୁ, ଧବଳ ରକ୍ତିମ ଦାନ୍ତପୂର୍ଣ୍ଣ ତାର ଭୟଙ୍କର ରୂପ ଦିନରେ ଦର୍ଶନ କରି କ୍ୟାପଟେନ ଓ ସୈନ୍ୟବାହିନୀ ଆତଙ୍କିତ ହୋଇ ଯାଇଥିଲେ । କ୍ୟାପଟେନଙ୍କ ପୂର୍ବ ନିର୍ଦ୍ଦେଶ ଅନୁଶାରେ ଗୁଳି ବର୍ଷଣ ଆରମ୍ଭ ହେଲା ମାତ୍ର ତାହାକୁ ଖାତିର ନକରି ସେହି

ରାକ୍ଷସ ଡ୍ରାଗନ ମାଡ଼ି ଚାଲିଲା ଆଗକୁ-ଆଉରି ଆଗକୁ । ପଛଘୁଞ୍ଚା ଦେଉଥିଲେ ମଧ୍ୟ କ୍ୟାପଟେନ ଓ ସୈନ୍ୟମାନେ ତାର ଚକ୍ଷୁ, ପାଟି ଓ କାନକୁ ଲକ୍ଷ୍ୟ କରି ଅନବରତ ଗୁଳିବର୍ଷଣ କରୁଥିଲେ । ତାର ଚିତ୍କାର ଓ ଉତ୍କଟ ବୋବାଳିରେ ଗଗନ ପବନ ପ୍ରକମ୍ପିତ ହେଉଥିଲା । ଧରାବକ୍ଷ ଥରି ଉଠୁଥିଲା ଓ ନୀଳପର୍ବତ ଉପତ୍ୟକାରେ ଏହା ବାଧାପ୍ରାପ୍ତ ହୋଇ ଏକ ଅନୁରୂପ ଭୟଙ୍କର ପ୍ରତିଶବ୍ଦ ସୃଷ୍ଟି କରୁଥିଲା ।

ହଠାତ୍ କୋଟିନିଧି ପାଇଲା ପରି ତାର ପାଦତଳେ ପଥର ଦେହରେ ଚାପି ହୋଇ ରହିଥିବା ସୈନିକକୁ ଶୂନ୍ୟକୁ ଉଠାଇ ନେଲା ଡ୍ରାଗନ । ସେତେବେଳେ ସେ ଚେତାଶୂନ୍ୟ । ଖୁବ ଜୋରରେ ଚାପି ଧରିଲା ସେହି ହତଭାଗ୍ୟ ଲୋକଟିକୁ ଡ୍ରାଗନ । ନିଜ ଆଖି ଆଗରେ ସହକର୍ମୀର ଏପରି ଦୟନୀୟ ମୃତ୍ୟୁ ଦେଖି ଅନ୍ୟମାନେ କ୍ରୋଧରେ ଲାଲ ହୋଇଗଲେ ଏବଂ ଅନବରତ ଗୁଳି ଚାଳନା କରି ଚାଲିଲେ । ଡ୍ରାଗନର କିନ୍ତୁ କିଛି ହେଉନଥିଲା । ସେ ଚିତ୍କାର କରି ସେହି ଖଣ୍ଡକୁ ଏକପ୍ରକାର ଶ୍ମଶାନରେ ପରିଣତ କରି ଦେଇଥିଲା । ଦୂରକୁ ଆସି ସେ ସୈନ୍ୟମାନଙ୍କ ଭିତରୁ କେତେକଙ୍କୁ ଧରିବାକୁ ଚେଷ୍ଟା କରୁଥିଲା । ମାତ୍ର ଆଉ ଆଗେଇ ପାରିନଥିଲା । ଅନବରତ ଗୁଳି ମାଡ଼ରେ ତାର ଆଖି, କାନରୁ ରୁଧିରର ନଦୀ ବୋହି ଚାଲିଥିଲା । ସେ ପଛଘୁଞ୍ଚା ଦେଇ ଫେରି ଯାଇଥିଲା ସେହି ପଥର ପଛକୁ, ଆଉ ବାହାରକୁ ଡେରା ହୋଇଥିବା ପଥର ଖଣ୍ଡକ ପୁଣି ପୂର୍ବ ଅବସ୍ଥାକୁ ଚାଲିଆସିଥିଲା । ଦୂରରୁ ଏସବୁ ଲକ୍ଷ୍ୟ କରୁଥିଲେ କ୍ୟାପଟେନ । ପ୍ରାୟ ଏକଶହ ଫୁଟ ଦୂରରୁ ସେମାନେ ଗୁଳି ବର୍ଷଣ କରୁଥିଲେ । ଏବେ ସମସ୍ତେ ଉପାୟ ଶୂନ୍ୟ । କାରଣ ସେହି ପଥରକୁ ଉଠାଇବା କିମ୍ବା କିଛି ବାଟ ଘୁଞ୍ଚାଇବା କାହା ପକ୍ଷରେ ସମ୍ଭବ ନୁହେଁ । ମୃତ ସୈନ୍ୟଙ୍କ ପ୍ରତି ସମସ୍ତଙ୍କ ମନରେ ଅହେତୁକ ଦୁଃଖ ଜାତ ହୋଇ ସାରିଥିଲା । ଆଗରୁ ସତର୍କ ନ ହେବାରୁ ଏପରି ଅବସ୍ଥା ଉପୁଜି ଥିବାରୁ ସମସ୍ତେ ଦୁଃଖିତ ଥିଲେ । ସେହି ସୈନ୍ୟକୁ ଡ୍ରାଗନ ତାରି ହାତରେ ଧରି ନେଇଥିଲା । ତେଣୁ ତା ବିଷୟରେ କୌଣସି ସମ୍ବାଦ ପାଇବା ସମ୍ଭବପର ନଥିଲା । ସେହି ସୈନିକ ଯେ ପଥର ଦେହରେ ଚାପା ହୋଇ ମୃତ୍ୟୁ ବରଣ କରିଛି ଏ ବିଷୟରେ ସମସ୍ତେ ନିଶ୍ଚିତ ଥିଲେ ।



# ଗୁମ୍ଫା ଭିତରେ ଡ୍ରାଗନ

ଏକ ଭୟଙ୍କର ସାମନା ଯୁଦ୍ଧ ପରେ ଏବଂ ମୃତ୍ୟୁର କରାଳ ରୂପ ଧାରଣ କରି ଆସିଥିବା ରାକ୍ଷସ ଡ୍ରାଗନର ପଳାୟନ ପରେ ସମସ୍ତେ ପ୍ରାୟ ଆଶ୍ୱସ୍ତ ହୋଇଥିଲେ । ଯୁଦ୍ଧ କ୍ଷେତ୍ରରେ ଜୟ, ପରାଜୟ, ମୃତ୍ୟୁ ରକ୍ତପ୍ରବାହ କିଛି ନୂଆ କଥା ନୁହେଁ । କିନ୍ତୁ ଏବେକାର ଯୁଦ୍ଧ ଥିଲା ଭିନ୍ନ ପ୍ରକାର । ଟିକେ ବେହୁସିଆର ହେଲେ ଜୀବନ ହାନିର ସମ୍ଭାବନା ସବୁବେଳେ ରହିଥିଲା ।

ହୁଇସିଲ ମାରି ସମସ୍ତଙ୍କୁ ଏକତ୍ରିତ କଲେ କ୍ୟାପଟେନ । ସତର୍କତାର ସହିତ ଭବିଷ୍ୟତର କାର୍ଯ୍ୟକ୍ରମ ସ୍ଥିର କରିବାକୁ ହେବ । ଏକ ଶୁଖିଲା କାଠ ଗଣ୍ଡି ଉପରେ ମୁଣ୍ଡ ଦେଇ ଶୋଇଥିଲେ କ୍ୟାପଟେନ୍ । ସୂର୍ଯ୍ୟାଲୋକ ସାନ୍ଦ୍ର ପତ୍ର ଗହଳରୁ କୌଣସିମତେ ଆସି ପଡ଼ିଥିଲା କ୍ୟାପଟେନଙ୍କ ଶରୀରରେ । ଝିଙ୍କାରୀର ଶବ୍ଦ ସହିତ ଏକ ସୁ ସୁ ଶବ୍ଦ ଶୁଭୁଥିଲା ଜଙ୍ଗଲ ଭିତରୁ । ଜଙ୍ଗଲରେ ଏସବୁ ନିତିଦିନିଆ ଘଟଣା । ବଣ୍ୟଜନ୍ତୁଙ୍କ ବିଭିନ୍ନ ପ୍ରକାର ଶବ୍ଦ ସହିତ ଏହି ସୈନ୍ୟମାନେ ପ୍ରାୟ କେହି ଅଭ୍ୟସ୍ତ ନଥିଲେ । କ୍ୟାପଟେନ ଚୁରୁଟ ଟାଣି ଭବିଷ୍ୟତର କାର୍ଯ୍ୟପନ୍ଥା ବିଷୟରେ ପରିକଳ୍ପନା କରୁଥିଲେ । କିଛି ଦୂରରେ ଶକ୍ତିଶାଳୀ ରାଇଫଲ ଧରି ପ୍ରସ୍ତୁତ ଥିଲେ ସୈନ୍ୟମାନେ । କାରଣ ସବୁ ବେଳପାଇଁ ଏହି ଅଜଣା ଭିତରେ ସତର୍କ ରହିବା ଦରକାର ।

ହଠାତ୍ ଟୋପାଏ ପାଣି ଆସି ପଡ଼ିଲା କ୍ୟାପଟେନଙ୍କ ମସ୍ତକ ଉପରେ । କ୍ୟାପଟେନ ଚମକି ପଡ଼ିଲେ । ଅଦିନରେ ବର୍ଷା ଜଳ କୁଆଡୁ ଆସିଲା । ସୁ ସୁ ଶବ୍ଦ ଅତି ନିକଟରେ ଶୁଭୁଥିଲା । ତେବେ କଣ କୌଣସି ଜଙ୍ଗଲ ଜନ୍ତୁ ମଳତ୍ୟାଗ କଲା ତାଙ୍କ ଉପରକୁ ? ସେ ଏହାର କାରଣ ଖୋଜିବାକୁ ଉପରକୁ ଚାହିଁଲେ । ଡିସୋଜା କ୍ୟାପଟେନଙ୍କ ନିକଟରେ ବସିଥିଲେ । ସେ ମଧ୍ୟ ଏହାର କାରଣ ଅନୁସନ୍ଧାନ କରିବାକୁ ଚେଷ୍ଟା କଲେ । ନିଜ ରୁମାଲରେ ପୋଛି ଦେଲେ ସେହି ଜଳ ବିନ୍ଦୁକୁ ଡିସୋଜା କ୍ୟାପଟେନଙ୍କ ମସ୍ତକରୁ । କିନ୍ତୁ ସେହି ଜଳର ରଙ୍ଗ

ହଳଦିଆ ଥିଲା । ଏହା ତେବେ କୌଣସି ପକ୍ଷୀର ମଳ । ମାତ୍ର ଏହା ଭିତରେ କୌଣସି ପ୍ରକାର ସାନ୍ଦ୍ରତା ନଥାଇ ଏହା ଅତି ସ୍ୱଚ୍ଛ ଥିଲା । ହଠାତ୍ ଉପରକୁ ଚାହିଁ ଡିସୋଜା ଚିତ୍କାର କରି ଉଠିଲେ ଆଉ ଘୋଷାରି ଆଣିଲେ କ୍ୟାପଟେନଙ୍କୁ ।

କ୍ୟାପଟେନ ଡିସୋଜାଙ୍କର ଏପରି ଅତର୍କିତ ବ୍ୟବହାରରେ ଅସନ୍ତୋଷ ପ୍ରକାଶ କରୁଥିଲେ । ମାତ୍ର ଡିସୋଜାଙ୍କ ଭଳି ଜଣେ ପୂର୍ବତନ ସାମରିକ କର୍ମଚାରୀ କୌଣସି ବିପଦ ନଦେଖିଲେ ଏପରି ବ୍ୟବହାର କରିବା ଅସମ୍ଭବ । ତେବେ କଣ ସେହି ବିପଦ ! କ୍ୟାପଟେନ କିଛି ବୁଝିପାରୁ ନଥିଲେ । ଉପରେ ସୁବିସ୍ତୀର୍ଣ୍ଣ ଶାଖା, ପ୍ରଶାଖା ମେଲାଇ ଶହଶହ ବୃକ୍ଷ ଘେରି ରହିଥିଲା । ଡିସୋଜା ଚିତ୍କାର କରି କହୁଥିଲେ ଭଗବାନଙ୍କ ଦୟାରୁ ଆପଣ ପୁଣିଥରେ ଆଜି ଜୀବନ ଦାନ ପାଇଲେ । ସେ କ୍ୟାପଟେନଙ୍କୁ ଟାଣି ଆଣି ଦେଖାଇଦେଲେ । କ୍ୟାପଟେନ ଯାହା ଦେଖିଲେ ସେଥିରେ ତାଙ୍କ ପରି ଜଣେ ସାହସୀ ବ୍ୟକ୍ତିର ମୁଣ୍ଡରେ ସ୍ୱେଦ ଚିହ୍ନ ବାରି ହୋଇ ପଡ଼ିଲା । ଏକ ବିରାଟକାୟ ଜଙ୍ଗଲୀ ସାପ ବହୁ ଉଚ୍ଚରେ ନିଜର ଲାଙ୍ଗୁଡ଼କୁ ଗଛ ଡ଼ାଳରେ ଓହଳାଇ ତଳକୁ ଝୁଲି ରହିଥିଲା ଓ ତାର ବିରାଟକାୟ ଜିହ୍ୱା ମେଲା କରି ସୁସୁ ଶବ୍ଦ କରୁଥିଲା ଏବଂ ଆକ୍ରମଣ ପ୍ରତୀକ୍ଷାରେ ଥିଲା । ତା ପାଟିରୁ କ୍ରମାଗତ ଗରଳ ବୋହୁଥିଲା । ଏହି ସାପ କ୍ୟାପଟେପନ୍‌ଙ୍କୁ ଦେଖି ତାଙ୍କୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇ ସାରିଥିଲା । ତା ପାଟିରୁ ତଳକୁ ଝରୁଥିବା ଗରଳରୁ ବୁନ୍ଦାଏ ଆସି କ୍ୟାପଟେନଙ୍କ ମୁଣ୍ଡରେ ପଡ଼ିଥିଲା । ମାତ୍ର ଯଦି ଏହା ତାଙ୍କ ପାଟିରେ ପଡ଼ିଥାନ୍ତା ତେବେ ହୁଏତ ସେହି ଉତ୍କଟ ବିଷ ଜ୍ୱାଳାରେ କ୍ୟାପଟେନ କେତେବେଳୁ ଆରପାରିକୁ ଯାଇ ସାରନ୍ତେଣି ।

ପିଠିରେ ହାତ ଥାପୁଡ଼ାଇ କ୍ୟାପଟେନ ଧନ୍ୟବାଦ ଜଣାଇଲେ ଡିସୋଜାଙ୍କୁ । ପର ମୁହୂର୍ତ୍ତରେ ତାଙ୍କ ହାତରେ ରିଭଲଭର ଗର୍ଜି ଉଠିଲା । ତାଙ୍କ ଲକ୍ଷ୍ୟ ଅବ୍ୟର୍ଥ ଥିଲା । ଆଖି ପିଛୁଳାରେ ଦୁମକରି ୫୦ ଫୁଟ ଲମ୍ବର ବିରାଟକାୟ ବିଷଧର ସର୍ପ ଠିକ୍ କ୍ୟାପଟେନ ଶୋଇଥିବା ଗଛ ଗଣ୍ଡି ଉପରେ ଅଜାଡ଼ି ହୋଇ ପଡ଼ିଲା । ଯନ୍ତ୍ରଣାରେ ଛଟପଟ ହେଉଥିଲା ସାପଟା । ତାର ବିରାଟକାୟ ଲାଞ୍ଜ ରାଗରେ ମୋଡ଼ି ହୋଇ ନିକଟସ୍ଥ ଏକ ଡାଳକୁ ଭାଙ୍ଗି ଦେଇଥିଲା ଏବଂ ଏହାର ଶକ୍ତିଶାଳୀ ମାଂସପେଶୀ ଚାଳନା ଦ୍ୱାରା ଏତେ ମୋଟା ଗଣ୍ଡିଟା ଧୂଳି ହୋଇ

ଯାଇଥିଲା । ଗୁଳି ମାଡ଼ରେ ଏହି ସାପର ମୁଣ୍ଡଟି କ୍ଷତବିକ୍ଷତ ହୋଇଥିଲା । ଏହି ଭୟଙ୍କର ସର୍ପର କାର୍ଯ୍ୟକଳାପକୁ ଦୂରରେ ଥାଇ ଲକ୍ଷ୍ୟ କରୁଥିଲେ କ୍ୟାପଟେନ ଓ ସେମାନଙ୍କର ସାଥୀମାନେ । ଶୀଘ୍ର ତାକୁ ଯନ୍ତ୍ରଣାରୁ ମୁକ୍ତି ଦେବାକୁ କ୍ୟାପଟେନଙ୍କ ରିଭଲଭର ପୁଣି ଥରେ ଗର୍ଜି ଉଠିଲା ଏବଂ କିଛି ସମୟ ଥରି ଉଠି ଏଥର ସାପଟି ନିସ୍ତେଜ ହୋଇଗଲା ।

ଦୂରରେ କେତେକ କ୍ଷୁଦ୍ର ମାଙ୍କଡ଼ ଡେଉଁ ଥିଲେ । ଏ ଅଞ୍ଚଳକୁ ସାଧାରଣତଃ କୌଣସି ପଶୁପକ୍ଷୀ ଆସୁନଥିଲେ । କାରଣ ଏ ଅଞ୍ଚଳରେ ରାକ୍ଷସ ଡ୍ରାଗନର ରାଜୁତି ଚାଲିଥିଲା । ଯିଏ ବା ସେଠାକୁ ଆସୁଥିଲେ ସମସ୍ତେ ତାର ଶୀକାର ହେଉଥିଲେ ।

ଡ୍ରାଗନ ଯେଭଳି ଭୟଙ୍କର ଥିଲା, ତାଠାରୁ ଏହି ନିର୍ଜନ ଦ୍ୱୀପ ଅଧିକ ଭୟଙ୍କର ଥିଲା । ପ୍ରତି ପାଦରେ ବିପଦ ଦେଖାଯାଉଥିଲା ।

ଡ୍ରାଗନର କୌଣସି ଶବ୍ଦ ଶୁଭୁନଥିଲା । ବୋଧହୁଏ ସେ କେତେବେଳୁ ପାହାଡ଼ ଭିତରେ ରହି ବିଶ୍ରାମ ନେଉଥିଲା । ନୀଳପର୍ବତର ଏହି ପଥର ପଛରେ ନିଶ୍ଚୟ ଏକ ବିରାଟ ଗୁମ୍ଫା ରହିଛି ଯେଉଁଠି ଡ୍ରାଗନ ହୁଏତ ବାସକରେ । ନଚେତ ସେହି ପଥର ପଛକୁ ଯିବାପରେ ଡ୍ରାଗନ ଗଲାକୁଆଡ଼େ ! ମାତ୍ର ବର୍ତ୍ତମାନ ଆଉ ସେହି ଗୁମ୍ଫାକୁ ଦେଖିବା ସମ୍ଭବ ନୁହେଁ କିମ୍ବା ସେହି ଆହତ ହିଂସ୍ର ଡ୍ରାଗନର ଅନୁସରଣ କରିବା ମଧ୍ୟ ସମ୍ଭବ ନୁହେଁ । ତା ସହିତ ସଂଗ୍ରାମ ପାଇଁ ନୂତନ ପନ୍ଥା ଗ୍ରହଣ କରିବାକୁ ହେବ ଏବଂ କୌଶଳକ୍ରମେ ତାକୁ ପରାସ୍ତ କରିବାକୁ ହେବ । କ୍ୟାପଟେନଙ୍କ ନିର୍ଦ୍ଦେଶରେ ସମସ୍ତେ ଫେରିବା ପାଇଁ ପ୍ରସ୍ତୁତ ହେଲେ । ସନ୍ଧ୍ୟା ଭିତରେ ସମସ୍ତଙ୍କୁ ଜାହାଜ ଯାଏ ଫେରିବାକୁ ହେବ ଏବଂ ନୂତନ ଯୁଦ୍ଧପ୍ରସ୍ତୁତି କାର୍ଯ୍ୟକ୍ରମ ସ୍ଥିର କରି ପରେ ଫେରି ଆସିବାକୁ ହେବ । କ୍ୟାପଟେନ୍ ଓ ସେମାନଙ୍କ ସୈନ୍ୟଦଳ ଅତି ସତର୍କତାର ସହିତ ଆଗେଇ ଚାଲିଥିଲେ । ପଥମଧ୍ୟରେ ବହୁ ବିସ୍ମୟକର ଜୀବ ତାଙ୍କ ଆଖିରେ ପଡୁଥିଲେ ।

ଚିତ୍ରିତ ପ୍ରଜାପତି, ସୁନ୍ଦର ରଙ୍ଗୀନ ବୁଢ଼ିଆଣୀ, କୀଟ ପତଙ୍ଗ ଉଡ଼ିବୁଲି ବଣ ଭୂମିରେ ଅତି ପ୍ରାକୃତିକ ମନୋରମ ଦୃଶ୍ୟ ସୃଷ୍ଟି କରୁଥିଲେ । ଏହି ମନୋରମ ଦୃଶ୍ୟ ସହିତ ଅନେକ ସ୍ଥାନରେ ମାଙ୍କଡ଼କୁ ଗିଳୁଥିବା ବିରାଟକାୟ ସର୍ପ, ଭାଲୁ ଓ

ଅନେକ ପ୍ରକାର ହିଂସ୍ର ଜନ୍ତୁ ତାଙ୍କ ଆଖିରେ ପଡୁଥିଲେ । ଅପରାହ୍ନ ଟପିଲାଣି । ଖୁବ୍ ଚଞ୍ଚଳ ସେମାନେ ସମୁଦ୍ର କୂଳରେ ଆହତ ଲୋକଙ୍କ ଶିବିରରେ ପହଞ୍ଚିବାକୁ ଚେଷ୍ଟା କରୁଥିଲେ । କ୍ୟାପଟେନଙ୍କ ଘଣ୍ଟାରେ ଦିନ ଦୁଇଟା ବାଜିଲା । ଦୂରରୁ ସାଗର ବକ୍ଷର କୋମଳ ଥଣ୍ଡା ପବନ ଓ ଗର୍ଜନ ଶୁଭିଲା । କ୍ୟାପଟେନ ଏବଂ



ତାଙ୍କ ସାଥୀମାନଙ୍କୁ ଦେଖି ଆହତ ବ୍ୟକ୍ତି ଓ ସେମାନଙ୍କୁ ଜଗିଥିବା ଲୋକେ ଆନନ୍ଦରେ କୋଳାହଳ କରି ଉଠିଲେ । ନିକଟସ୍ଥ ବାଲୁକା ଶଯ୍ୟାରେ ଏକ ବିରାଟକାୟ ଜଳଜୀବ ମରିପଡ଼ିଥିଲା । ଏହା ଯେ ତାଙ୍କୁ ସାଗର ବକ୍ଷରେ ସେଦିନ ଆକ୍ରମଣ କରିଥିବା ଡ୍ରାଗନ, ଏ ବିଷୟରେ କାହାରି ସନ୍ଦେହ ରହିଲା ନାହିଁ । କ୍ୟାପଟେନ ଓ ତାଙ୍କ ସୈନ୍ୟଦଳ ଦୌଡ଼ିଯାଇ ସେହି ଦାନବ ରାକ୍ଷସ ଡ୍ରାଗନକୁ ଦେଖୁଥିଲେ ଏବଂ ତାହାର ଫଟୋ ଉଠାଉଥିଲେ । ସେଦିନ ଗୁଳି ତାର ମସ୍ତକ ଭେଦ କରିଥିଲା ଏବଂ ଏହା କିଛି ସମୟ ଭିତରେ ମରିଯାଇ ଭାସିଆସି ସମୁଦ୍ର କୂଳରେ ଲାଗିଥିଲା । ଏହା ଯେ ସେହି ଦ୍ୱୀପର ଅଧିବାସୀ ତାହା ଜଣାପଡୁଥିଲା । ଏହା ଏକ ଉଭୟଚର ପ୍ରାଣୀ ଓ ସାଗର ବକ୍ଷରେ ବିଚରଣ କରୁ କରୁ ପ୍ରଥମ ଥର ଲଞ୍ଚ୍ ଶବ୍ଦ ଶୁଣି ତାଙ୍କୁ ଆକ୍ରମଣ କରିଥିଲା ।

ଏ ପ୍ରକାର ଜଳରେ ବିଚରଣ କରୁଥିବା ବିରାଟକାୟ ଜୀବଙ୍କୁ ସେମାନେ ପ୍ରଥମ ଥର ପାଇଁ ଦେଖିଥିଲେ । ଅନେକ ତା'ର ଦାନ୍ତକୁ ପରୀକ୍ଷାକରି ତା'ର ତୀକ୍ଷ୍ଣତା ମାପୁଥିଲେ । କ୍ୟାପଟେନଙ୍କ ନିର୍ଦ୍ଦେଶରେ ସେହି ଡ୍ରାଗନର ମସ୍ତକଟିକୁ ସୁରକ୍ଷିତ କରାଯିବାକୁ ଅଣାଗଲା । ମାତ୍ର ସେତେବେଳକୁ ତା'ର ଶରୀର ପ୍ରାୟ ପଚି ଆସୁଥିଲା । ଦୁର୍ଗନ୍ଧ ଆସ୍ତେ ଆସ୍ତେ ତା' ଶରୀରରୁ ବାହାରୁ ଥିଲା । କ୍ୟାପଟେନ ତା' ଦାନ୍ତ ଓ କେତେକ ହାଡ଼ ସଂଗ୍ରହ କରିବାକୁ ନିର୍ଦ୍ଦେଶ ଦେଇ ସମୁଦ୍ରକୂଳ ଶିବିରକୁ ଫେରି ଆସିଲେ ।

ବର୍ତ୍ତମାନ ଆକ୍ରମଣକାରୀ ଏହି ଡ୍ରାଗନର ମୃତ୍ୟୁ ହୋଇଥିବାରୁ ସମସ୍ତେ ଆନନ୍ଦରେ ଜାହାଜ ଭିତରକୁ ଫେରିଯିବାକୁ ପ୍ରସ୍ତୁତ ହେଲେ । ମାତ୍ର ପୁଣି ଯେ ସାଗର ବକ୍ଷରେ ଏପରି ଆକ୍ରମଣକାରୀ ଜୀବ ନଥିବେ ଏ ବିଷୟରେ କେହି ସନ୍ଦେହମୁକ୍ତ ହୋଇପାରୁ ନଥିଲେ । ଏହି ଅଜବ ଦ୍ୱୀପରେ ସବୁ ଅସମ୍ଭବ ସମ୍ଭବ ଥିଲା ।



# ଜାହାଜକୁ ପ୍ରତ୍ୟାବର୍ତ୍ତନ

ଦିନ ତିନିଟା । ଅପରାହ୍ନ ସୂର୍ଯ୍ୟ ଆସ୍ତେ ଆସ୍ତେ ନିସ୍ତେଜ ହୋଇ ନୀଳ ପର୍ବତ ପଛରେ ମୁହଁ ଲୁଚାଇବାକୁ କ୍ରମେ ତତ୍ପର ହେଲାଣି । ନିକଟରେ ଥିବା ଜାହାଜରୁ କ୍ୟାପଟେନଙ୍କ ପ୍ରତ୍ୟାବର୍ତ୍ତନ ଓ ବିଜୟସୂଚକ ସମ୍ବାଦଶୁଣି ଭାସିଆସୁଛି ନୃତ୍ୟ ଗୀତର କାର୍ଯ୍ୟକ୍ରମ । ଏହା ଏହି ଭୟଙ୍କର ଦ୍ୱୀପରେ ଥାଇ କ୍ୟାପଟେନ ଓ ତାଙ୍କ ସୈନ୍ୟ ଦଳ ଶୁଣିପାରୁ ନଥିଲେ ହେଁ ବାଇନାକୁଲାର ସାହାଯ୍ୟରେ ଏହା ଦେଖିବା ସମ୍ଭବ ହେଉଛି ।

କ୍ୟାପଟେନଙ୍କ ମନରେ ସୁଖ ନାହିଁ । ଏହି ବିଭୀଷିକାମୟ ଦ୍ୱୀପ ଭିତରେ ସେ ଦୁଇଥର ଜୀବନ ଦାନ ପାଇଛନ୍ତି । ମାତ୍ର ସେ ମୃତ୍ୟୁବରଣ କରି ତାଙ୍କର ସୈନ୍ୟଟି ବଞ୍ଚିଯାଇଥିଲେ ସେ ହୁଏତ ଅଧିକ ଆନନ୍ଦିତ ହୋଇଥାନ୍ତେ । ଦୁଇଟି ରାକ୍ଷସଜୀବ ସହିତ ତାଙ୍କର ସଂଘର୍ଷ ହୋଇଛି । କେତେକ ବିଷଧର ଜୀବଙ୍କ ସହିତ ମୁହାଁମୁହିଁ ହୋଇଛି । ସେ ସେମାନଙ୍କ ମଧ୍ୟରୁ ଜଣକୁ ଆହତ କରିଛନ୍ତି, ଜଣେ ମୃତ୍ୟୁବରଣ କରି ସାଗରବେଳାରେ ବିରାଟବପୁ ଧରି ଚିରଦିନ ପାଇଁ ଶୋଇ ରହିଛି । ମାତ୍ର ସେ ଯେଉଁ କାମ ପାଇଁ ଆସିଥିଲେ ସେଥିରେ କଣ ସଫଳ ହେଲେ ? କଣ ହେଲା ସେହି ହତଭାଗ୍ୟ ଆହତ ଯୁବକର ? ଡ୍ରାଗନ ହାତରେ ଧରାଦେଇଥିବା ସୈନିକଟି ଏବେ ସୁଦ୍ଧା ମୃତ ନା ଜୀବିତ ? ଏସବୁର ସଠିକ୍ ସମ୍ବାଦ ନପାଇଲା ଯାଏ ତାଙ୍କ ମନରେ ଶାନ୍ତି ନାହିଁ, ସେ ନିଶ୍ଚିନ୍ତରେ ଫେରିଯିବାର ପ୍ରଶ୍ନ ନାହିଁ । ଯଦି ସେ ବର୍ତ୍ତମାନ ଦେଶକୁ ଫେରିଯିବେ ତେବେ କଣ କହିବେ ତାଙ୍କୁ ବିଶ୍ୱବାସୀ । କାପୁରୁଷ ପରି ଡ୍ରାଗନ ମୁହଁକୁ ଦୁଇଟି ଅମୂଲ୍ୟ ଜୀବନକୁ ଠେଲିଦେଇ ନିଜେ ନେତା ସାଜିଥିବା ସେ କଣ ଫେରିଯାଇ ବିଶ୍ୱବାସୀଙ୍କୁ ଏହି ସମ୍ବାଦ ଦେବେ ? ସେ ମନେ ମନେ ପ୍ରତିଜ୍ଞା କଲେ ଯେ, କୌଣସି ଉପାୟରେ ସେ ସେହି ଦୁଇ ଜଣଙ୍କର ପତ୍ତା ସଂଗ୍ରହ କରିବେ ଓ ସମ୍ଭବ ହେଲେ ସେମାନଙ୍କୁ ଏହି ରାକ୍ଷସ କବଳରୁ ମୁକ୍ତ କରିବେ । ଏହା ନକରିବା ଯାଏ ତାଙ୍କର ବିଶ୍ରାମ ନାହିଁ । ଏହା ନକରି ପାରିଲେ ହୁଏତ ତାଙ୍କର ମୃତ ଦେହ ଡ୍ରାଗନ ହାତରେ

ଧରାଦେଇପାରେ କିନ୍ତୁ ସେ ଏପ୍ରକାର ଏକ କାପୁରୁଷ ମୁହଁ ନେଇ କେବେ ହେଲେ ଫେରି ପାରିବେ ନାହିଁ। ଦୀର୍ଘ ନିଶ୍ୱାସ ଛାଡ଼ିଲେ କ୍ୟାପଟେନ।

ତାଙ୍କର ଅବଶ ଶରୀର ପଡ଼ିଥିଲା ଏକ କ୍ଷୁଦ୍ର ନୌକାରେ ଏବଂ ନୌକା ଜାହାଜ ଆଡ଼କୁ ବେଗଗାମୀ ଥିଲା। ତାଙ୍କୁ ଅନୁସରଣ କରି ପାଖାପାଖି ଚାଲିଥିଲା ଦଶଟି ନୌକା। ଜାହାଜ ଉପକୂଳଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ଥିଲା। ସୈନ୍ୟମାନେ ଅପ୍ରତ୍ୟାଶିତ ବିପଦର ସମ୍ମୁଖୀନ ହେବାକୁ ବନ୍ଧୁକଧରି ପ୍ରସ୍ତୁତ ହୋଇଥିଲେ। ପ୍ରତି ମିନିଟ୍‌ରେ ସେମାନେ ବିପଦର ସମ୍ଭାବନା ଆଶା କରୁଥିଲେ। ଶୀତ ଦିନର ଧୀର ପବନରେ ନୀଳ ସାଗର ଜଳରେ କ୍ଷୁଦ୍ର ତରଙ୍ଗ ଉଠୁଥିଲା। ବୋଟ ଚାଳନା ଯୋଗୁ କ୍ଷୁଦ୍ର ଲହରୀମାଳା ସୃଷ୍ଟି ହୋଇ ବହୁ ଦୂରଯାଏ ମାଡ଼ି ଚାଲି ପୁଣି ସାଗରର ଅଥଳ ଜଳରେ ଲୀନ ହୋଇଯାଉଥିଲା। ଦୂରରେ ଉଡ଼ନ୍ତାମାଛ ଆକାଶକୁ ଡେଇଁ ପଡ଼ି ପୁଣି ଜଳରେ ପଡୁଥିଲେ। ସମସ୍ତେ ଏକ ଭୟଙ୍କର ଅବସ୍ଥାରେ ଫେରି ଆସିଥିବାରୁ ପ୍ରାୟ ଉତ୍‌ଫୁଲ୍ଲ ଥିଲେ, ମାତ୍ର ସଙ୍ଗୀ ସୈନିକର ଶୋଚନୀୟ କରୁଣ ଅବସ୍ଥାର ଚିତ୍ର ମନମଧ୍ୟକୁ ଆସିଯିବା ମାତ୍ରେ ସମସ୍ତଙ୍କ ମନରେ ଗଭୀର ଦୁଃଖର ଛାୟା ସ୍ପଷ୍ଟ ବାରି ହୋଇପଡୁଥିଲା।

ଡିସୋଜା ବସି ଭାବୁଥିଲେ ତାଙ୍କ ନିଜର ଅଭିଜ୍ଞତାର କଥା। ଏହି ସୈନିକ ପରି ସେହି ଯୁବକକୁ ଠିକ୍ ସେହି ଅବସ୍ଥାରେ ହିଁ ଡ୍ରାଗନ ତାଙ୍କରି ଆଖି ଆଗରୁ ଉଠାଇ ନେଇ ସେଦିନ ଅଟ୍ଟହାସ୍ୟ କରିଥିଲା ଓ ଗୋଟାଏ ହାତରେ ଚିପି ଧରି ଚିତ୍କାର କରିଥିଲା । କି କଠୋର ବିକଟାଳ ସେ ଚିତ୍କାର ଓ ଅଟ୍ଟହାସ୍ୟ ! ଏବଂ କି ଦାରୁଣ ସେ ଦୃଶ୍ୟ। ସେ କଥା ମନେ ପକାଇଲେ ଏବେ ସୁଦ୍ଧା ଡିସୋଜାଙ୍କ ଶରୀରରେ ଭୟର ସୂଚନା ଦେଖାଯାଉଥିଲା। ସେଦିନ ଏକାକୀ ତାଙ୍କରି ଆଗରେ ସେହି ଯୁବକଙ୍କୁ ଡ୍ରାଗନ ଉଠାଇନେଇଥିବା ବେଳେ ଆଜି ବହୁ ସଶସ୍ତ୍ର ସୈନ୍ୟ କ୍ୟାପଟେନ ପ୍ରମୁଖଙ୍କ ଆଗରେ ବି ସେ ଜଣକୁ ଉଠାଇ ନେଇଗଲା। ଏମାନେ ତାର କ୍ରୁର ହାତରୁ ସେହି ହତଭାଗ୍ୟକୁ କୌଣସିମତେ ରକ୍ଷା କରିପାରିଲେ ନାହିଁ। ତାର ମୃତଦେହ ମଧ୍ୟ ଉଦ୍ଧାର କରିବା ସମ୍ଭବ ହେଲା ନାହିଁ। ତେବେ ସେମାନେ ଡ୍ରାଗନ ଆଗରେ କେତେ ହୀନ ସତେ ? ଯଦି ଡ୍ରାଗନ ଚାହିଁଥାନ୍ତା ଓ କୌଶଳ ଜାଣିଥାନ୍ତା ତେବେ ଅନାୟାସରେ ସେମାନଙ୍କ ଭିତରୁ ଅନେକଙ୍କୁ ଧରି

ନେଇପାରିଥାନ୍ତା । କିନ୍ତୁ ଏତେ ବିରାଟକାୟ ଜୀବ ହେଲେ ମଧ୍ୟ ବୋଧହୁଏ ତା ନିକଟରେ ତୀକ୍ଷ୍ଣ ବୁଦ୍ଧିର ଅଭାବ ରହିଛି ।

ଡିସୋଜା ଭାବୁଥିଲେ ଏଥରକ ତା ଆଗକୁ ଆଉ ଏପରି ଅପ୍ରସ୍ତୁତ ଭାବେ ଯିବା ଠିକ୍ ହେବନାହିଁ । ପୁଣି ଯେପରି ନରହତ୍ୟାର ପୁନରାବୃତ୍ତି ନ ଘଟେ ତାହା ଦେଖିବା ସମସ୍ତଙ୍କର କର୍ତ୍ତବ୍ୟ ହେବା ଦରକାର । ଏହିପରି ଚିନ୍ତା ଭିତରେ କୋଳାହଳ କ୍ରମେ ପାଖେଇ ଆସିଲା । ଜାହାଜ ଖୁବ୍ ନିକଟତର ହୋଇସାରିଥିଲା । କ୍ୟାପଟେନ ଓ ଅନ୍ୟମାନଙ୍କୁ ଅଭିନନ୍ଦନ ଜଣାଉଥିଲେ ଡେକ ଉପରେ ଥାଇ କର୍ମଚାରୀମାନେ । ସମସ୍ତେ ଆସ୍ତେ ଆସ୍ତେ ଜାହାଜ ଉପରକୁ ଉଠିଯାଇଥିଲେ । ସୂର୍ଯ୍ୟ ନୀଳପର୍ବତ କଡ଼ରେ ମୁହଁ ଲୁଚାଇବାକୁ ଯାଉଥିଲେ । ଗୋଧୂଳି ମାଡ଼ି ଆସିଥିଲା । ସନ୍ଧ୍ୟାର ଆଗମନ ସହିତ ବିରାଟକାୟ ଜାହାଜ ଏମ୍.ଭି. ଭିକ୍ଟୋରିଆରେ ଆଲୋକର ବନ୍ୟା ଖେଳାଇ ଜଳିଉଠିଲା ଶହ ଶହ ଉଜ୍ଜ୍ୱଳ ଆଲୋକ । ଗଭୀର ସାଗର ବକ୍ଷରେ ସତେ ଯେପରି ଏକ ଆଲୋକର ଭେଳା ଭାସୁଥିଲା । ବହୁ ପରିଶ୍ରମ ପରେ ସୈନ୍ୟମାନେ ବିଶ୍ରାମ ନେଉଥିଲେ । ଆହତମାନଙ୍କର ସେବା ଶୁଶ୍ରୂଷା ଚାଲିଥିଲା ଯୁଦ୍ଧକାଳୀନ ଭିତ୍ତିରେ । ସମସ୍ତେ ଶୋଇ ସାରିଥିଲେ । ଏକା ଉଜାଗର ଥିଲେ କ୍ୟାପଟେନ । ତାଙ୍କ ଆଖି ଆଗରୁ ସେହି ସୈନିକର ଅବସ୍ଥା ବାରମ୍ବାର ଚାଲି ଆସୁଥିଲା ଏବଂ ସେ ନିଜକୁ ସୁପ୍ତ ରଖିବାକୁ ଚେଷ୍ଟା କରି ମଧ୍ୟ ବାରମ୍ବାର ବିଫଳ ହେଉଥିଲେ ।



# ସେ ଅମର ବର ପାଇଛି

ଏହିପରି ବିରାଟ ରାକ୍ଷସଜୀବର କଣ କେବେ ମୃତ୍ୟୁ ହୋଇପାରେ ? ଏ ବିଷୟରେ ଜାହାଜର କର୍ମଚାରୀ, ସୈନ୍ୟବାହିନୀ ଏବଂ କ୍ୟାପଟେନଙ୍କ ଉପସ୍ଥିତିରେ ଆଲୋଚନା ଚାଲିଥିଲା ଜାହାଜ ଭିତରର ଆଲୋଚନା କକ୍ଷରେ । ଏଥର ବିଭୀଷିକାମୟ ଦ୍ୱୀପକୁ ଯାଇନଥିବା କର୍ମଚାରୀମାନେ ସୈନିକ ମାନଙ୍କଠାରୁ ଏହି ରାକ୍ଷସ ଜୀବର ଆକୃତି ଶୁଣି ଆତଙ୍କିତ ହେଉଥିଲେ । ସେହି ରାକ୍ଷସ ଡ୍ରାଗନର ଯେ କେବେ ମୃତ୍ୟୁ ହୋଇ ପାରେନା ଏହା ଅଧିକାଂଶଙ୍କର ମତ ଥିଲା । ଶହ ଶହ ରାଉଣ୍ଡ ଗୁଳି ବର୍ଷଣ ପରେ ଏହା ଦେହର ଶକ୍ତିଶାଳୀ, ବଳିଷ୍ଠ ଚର୍ମକୁ ଯେ ଗୋଟିଏ ଗୁଳି ଭେଦ କରି ପାରିଲା ନାହିଁ ଏହା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା । ହଠାତ୍ ଡ୍ରାଗନର ଅନୁପସ୍ଥିତି ଫଳରେ ତାର ଭବିଷ୍ୟତ କଣ ହେଲା ସେ ବିଷୟରେ କେହି ଉପସଂହାରରେ ପହଞ୍ଚି ପାରୁନଥିଲେ । କେତେକ ମତ ଦେଉଥିଲେ ସେହି ରାକ୍ଷସଜୀବ ଅମର ।

ମାତ୍ର କ୍ୟାପଟେନ ମତ ଦେଉଥିଲେ ଯେ ସେହି ଡ୍ରାଗନ ଗୁରୁତର ଭାବେ ନିଶ୍ଚିତ ରୂପେ ଆହତ ହୋଇଛି ଏବଂ ନିକଟରେ ମୃତ୍ୟୁବରଣ କରିବ । ତା ଦେହରୁ ବୋହିଥିବା ଧାର ଧାର ରକ୍ତ ଯେ ଡ୍ରାଗନର ଚକ୍ଷୁ, କାନରୁ ବୋହୁଥିଲା ସେ କଥା କ୍ୟାପଟେନ ସ୍ମରଣ କରାଇଦେଇ ସେମାନଙ୍କୁ କଳେ ବଳେ କୌଶଳେ ଡ୍ରାଗନକୁ ଆୟତ୍ତକରି ଜୟ କରିବାକୁ ହେବ ଏବଂ ଆହତ ଯୁବକର ସନ୍ଧାନ ନେବାକୁ ହେବ ବୋଲି ମତ ଦେଇଥିଲେ । ଏପରି କାପୁରୁଷଭାବେ ଫେରିଗଲେ ବିଶ୍ୱବସୀ ସେମାନଙ୍କୁ କେବେ କ୍ଷମା ଦେବେ ନାହିଁ ଏବଂ ଡିସୋଜାଙ୍କୁ ଉଦ୍ଧାର କରି ସେ ଅର୍ଜନ କରିଥିବା ପ୍ରତିପତ୍ତି ଓ ଯଶ ଖୁବ୍ ଶୀଘ୍ର ଲିଭିଯିବ ବୋଲି ପ୍ରକାଶ କରିଥିଲେ । କମାଣ୍ଡର ଏବଂ ତାଙ୍କ ସାଥୀ ତଥା ଜାହାଜ କର୍ମଚାରୀମାନେ ତାଙ୍କ କଥାକୁ ସମର୍ଥନ କରୁଥିଲେ । ଏବେ ଶେଷରେ ପୁଣିଥରେ ଡ୍ରାଗନ ନିକଟକୁ ଯୁଦ୍ଧଯାତ୍ରା କରିବାକୁହେବ ବୋଲି କ୍ୟାପଟେନ ସମସ୍ତଙ୍କୁ ପରାମର୍ଶ ଦେଇଥିଲେ ।

କ୍ୟାପଟେନ ଚିନ୍ତିତ ଥିଲେ । ସେ ପ୍ରତିଶ୍ରୁତି ଦେଲେ ଯେ ଏଥର ଯୁଦ୍ଧ ସମ୍ପୂର୍ଣ୍ଣ ରୂପେ ସୁଚିନ୍ତିତ ପଦ୍ଧତିରେ ହେବ ଏବଂ ସେମାନେ ନିଶ୍ଚୟ ବିଜୟୀ ହୋଇ ଫେରିବେ । କ୍ୟାପଟେନଙ୍କ ନିର୍ଦ୍ଦେଶରେ ଜାହାଜ ଭିତରେ ଥିବା ବହୁ ଯନ୍ତ୍ରମାନବଙ୍କୁ ପ୍ରସ୍ତୁତ କରାଗଲା । ସେମାନେ ହିଁ ଚଳିତ ଯୁଦ୍ଧରେ ଡ୍ରାଗନ ନିକଟରେ ରହି ଯୁଦ୍ଧ କରିବେ ।

ସାଗର ଭିତରେ ଯାତ୍ରା କରୁଥିବା ଭିକ୍ଟୋରିଆ ଭଳି ସାଗର ପର୍ଯ୍ୟବେକ୍ଷଣ ଜାହାଜରେ ପ୍ରାୟ ସବୁ ଅତ୍ୟାଧୁନିକ ଯନ୍ତ୍ରପାତି  କଳାକୌଶଳ ରହିଥିଲା । ଯନ୍ତ୍ରମାନବ ମାନଙ୍କର ପରୀକ୍ଷା ନିରୀକ୍ଷା କାର୍ଯ୍ୟରେ ଇଞ୍ଜିନିୟରମାନେ ଲାଗିଗଲେ । ପ୍ରାୟ ୩୦ଟି ଯନ୍ତ୍ରମାନବଙ୍କୁ ସୈନିକ ପୋଷାକରେ ସଜ୍ଜିତ କରାଯାଇ ରଖାଗଲା ଏବଂ ସେମାନଙ୍କ ହାତରେ ଶକ୍ତିଶାଳୀ କମାଣ, ଷ୍ଟେନଗନ ଓ ବୋମା ଖଞ୍ଜାଗଲା । ଏମାନଙ୍କୁ ଚାଳନା କରିବାକୁ ଏକ କମ୍ପ୍ୟୁଟର ରଖାଗଲା । କମ୍ପ୍ୟୁଟରର ନିର୍ଦ୍ଦେଶ ଅନୁସାରେ ଏମାନେ ଯେପରି ଠିକ୍ ଭାବେ କାମ କରିବେ ତାହା ମଧ୍ୟ ପରୀକ୍ଷା କରାଯାଇ ଦେଖାଗଲା ।



# ଶେଷରେ ଯନ୍ତ୍ରମାନବ

ଶୁଭସ୍ୟ ଶୀଘ୍ରମ୍ । ଯେ କୌଣସି ଶୁଭ କାମ ଶୀଘ୍ର କରିବା ଦରକାର । ଦ୍ୱିତୀୟତଃ ଆହତ ଡ୍ରାଗନ ଉପରେ ଗୋଳାବର୍ଷଣ କରିବା ଅତି ସହଜ ମାତ୍ର ଥରେ ସେ ସୁସ୍ଥ ହେଲେ ତା ଆଗକୁ ଯିବା କଷ୍ଟକର ବ୍ୟାପାର । କ୍ୟାପ୍‌ଟେନ୍, କମାଣ୍ଡର ଓ ଡିସୋଜାଙ୍କ ଉପସ୍ଥିତିରେ ଯୁଦ୍ଧ କୌଶଳ ବିଷୟରେ କାର୍ଯ୍ୟପନ୍ଥା ପ୍ରସ୍ତୁତ ହେଲା । ଆଗରେ ୩୦ଟି ଯନ୍ତ୍ରମାନବ ରହିବେ ଏବଂ ସେମାନେ ହିଁ ରାକ୍ଷସ ଡ୍ରାଗନକୁ ସାମନା କରିବେ । ସେମାନଙ୍କ ଠାରୁ ୫୦ ଫୁଟ ଦୂରରେ ବଣ, ବୁଦା କଡ଼ରେ ଲୁଚି ରହିବେ ସୈନ୍ୟବାହିନୀ ଓ କମାଣ୍ଡର । ଏମାନେ ଠିକ୍ ଏମାନଙ୍କ ପଛରେ ନରହି କଡ଼କୁ ରହିବେ । ଯଦିବା ଡ୍ରାଗନ ଯନ୍ତ୍ରମାନବଙ୍କୁ ଟପି ଆଗେଇଲା ତେବେ ସିଧାସଳଖ ଆସିଲେ ମଧ କାହାକୁ ପାଇବ ନାହିଁ । ସେତିକି ବେଳେ ତା ଉପରକୁ ଦୁଇ କଡ଼ରୁ ଗୁଳି ବର୍ଷଣ ଆରମ୍ଭ ହେବ । ଦୁଇ କଡ଼ରୁ ଯେକୌଣସି ଗୋଟିଏ ଦିଗକୁ ସେ ଆଗେଇଲା ବେଳେ ଅନ୍ୟ ଦିଗରେ ଥିବା କ୍ୟାପଟେନ ପ୍ରମୁଖ ତା ଉପରକୁ ଗୁଳିବର୍ଷଣ କରି ତାକୁ ଚାରି ଦିଗରୁ ଆକ୍ରମଣ କରି ଶେଷ କରିବାକୁ ହେବ । ଏଥିପାଇଁ ପ୍ରତି କ୍ଷେତ୍ରରେ ଅତ୍ୟଧିକ ସତର୍କତାର ଆବଶ୍ୟକତା ଥିଲା । କ୍ୟାପଟେନ ତାଙ୍କ ସହକର୍ମୀଙ୍କୁ ସ୍ପଷ୍ଟ ଭାବେ ବୁଝାଇ ଚାଲିଥିଲେ ସେମାନଙ୍କର ଯୋଜନା ବିଷୟରେ । ଯାତ୍ରା ପାଇଁ ଦିନ ପ୍ରସ୍ତୁତ । ସବୁପ୍ରକାର ପ୍ରସ୍ତୁତି ପର୍ବ ପ୍ରାୟ ଶେଷ । ଆସନ୍ତାକାଲି ପ୍ରାତଃ କାଳରୁ ପୁଣି ସେହି ବିଭୀଷିକାମୟ ଦ୍ୱୀପକୁ ଯାତ୍ରାରମ୍ଭ ।



# ଶେଷ ସଂଗ୍ରାମ

ପ୍ରସ୍ତୁତିପର୍ବ ପୂର୍ବ ରାତ୍ରିରୁ ସରିଥିଲା । ଫର୍ଚ୍ଚା ଦିଶିବା ପୂର୍ବରୁ ଗୋଟି ଗୋଟି କରି ୨୦ଟି ନୌକା ଖସିଲା ବିରାଟକାୟ ଜାହାଜ ଉପରୁ ସାଗର ବକ୍ଷକୁ । କ୍ୟାପଟେନ ଓ ସହକର୍ମୀ ନିଜ ଦଳର ସଫଳତା କାମନା କରି ଆଣ୍ଠୁମାଡ଼ି ଭଗବାନଙ୍କୁ ପ୍ରାର୍ଥନା କରି ଆଗେଇଲେ ନୌକାଆଡ଼େ । ଯନ୍ତ୍ର ଚାଳିତ ନୌକା ଖୁବ୍‌ଶୀଘ୍ର ତାର ଗନ୍ତବ୍ୟ ପଥରେ ଅଗ୍ରସର ହେଲା । ଦ୍ୱୀପର ସବୁଜିମାକୁ ପାହାନ୍ତିଆ କୁହୁଡ଼ି ଘେରି ରହିଥିଲା । ସାଗର ଉତ୍‌ଫୁଲିତ ଜଳରାଶିରେ ଉଦବେଳିତ ହେଉଥିଲା । ଏଥର କିନ୍ତୁ ସମସ୍ତେ ପ୍ରସ୍ତୁତ ଥିଲେ । କାଳେ ପୁଣି କୌଣସି ଅଜଣା ଜନ୍ତୁର ଶୀକାର ହୋଇପାରନ୍ତି ସେମାନେ । ସମସ୍ତ ନୌକାରେ ଅତି ଶକ୍ତିଶାଳୀ ବୋମା, ମାରଣାସ୍ତ୍ର ଧରି ଠିଆହୋଇ ପହରା ଦେଉଥିଲେ ସୈନ୍ୟମାନେ ।

ଖୁବ୍‌ଶୀଘ୍ର ସେମାନେ ଉପକୂଳ ସ୍ପର୍ଶ କଲେ । ସେତେବେଳଯାଏ କେତେକ ବଣୁଆ ପକ୍ଷୀଙ୍କ କାକଳୀ ଶୁଭୁଥିଲା । ମାତ୍ର ଜନବସତି ନଥିବାରୁ ଏହି ଦ୍ୱୀପରେ ସେତେ ସଂଖ୍ୟକ ପକ୍ଷୀ ନଥିଲେ । ଧୀର ଭାବରେ ସମସ୍ତ ସରଞ୍ଜାମ ଓହ୍ଲାଇ ନୌକାଗୁଡ଼ିକୁ ଲଙ୍ଗର ପକାଗଲା । ଯନ୍ତ୍ରମାନବ ଓ ଅନ୍ୟାନ୍ୟ ସମସ୍ତ ପଦାର୍ଥକୁ ନିଜେ ହିଁ ବୋହି ନେବାକୁ ହେବ । କାରଣ ଘଞ୍ଚ ଜଙ୍ଗଲ ରାସ୍ତାରେ କୌଣସି ପ୍ରକାର ଠେଲା ଗାଡ଼ି ଚାଲିବାର ବ୍ୟବସ୍ଥା କରିବା ଅସମ୍ଭବ ଥିଲା । ସମସ୍ତେ କିଛି କିଛି ଅସ୍ତ୍ରଶସ୍ତ୍ର, ଖାଦ୍ୟଦ୍ରବ୍ୟ ଧରି ଆଗେଇଲେ । ଏହି ଦ୍ୱୀପର ସବୁଠାରୁ ଅଧିକ ପରିଚିତ ଥିଲେ ଡିସୋଜା । ସେ ନୀଳପର୍ବତ ଓ ହାଡ଼ ପାହାଡ଼କୁ ଯିବାରାସ୍ତା ପ୍ରଦର୍ଶନ କରି ଚାଲିଥିଲେ । ତାଙ୍କୁ ଅନୁସରଣ କରୁଥିଲେ କ୍ୟାପଟେନ ଓ କମାଣ୍ଡରମାନେ ତଥା ଜିନିଷପତ୍ର ବୋହି ନେଉଥିବା ସୈନ୍ୟମାନେ । ସେମାନଙ୍କ ଦୁଇ କଡ଼ରେ ଅତ୍ୟାଧୁନିକ ମାରଣାସ୍ତ୍ର ଧରି ଧୀର ପଦରେ ଚାଲିଥିଲେ ବହୁ କୁଶଳୀ ସୈନିକ ।

ଧୀରେ ଧୀରେ ବନ୍ଧୁର ରାସ୍ତାରେ ଯିବାକୁ ହେଉଥିବାରୁ ଘଣ୍ଟାକର ବାଟ ପାଞ୍ଚଘଣ୍ଟା ଲାଗୁଥିଲା । ମଧ୍ୟାହ୍ନ ପୂର୍ବରୁ ହାଡ଼ପାହାଡ଼ ଓ ନୀଳପର୍ବତ ନିକଟ ଉପତ୍ୟକା ଓ ଗତ ଯୁଦ୍ଧ ହୋଇଥିବା ସ୍ଥାନରେ ପହଞ୍ଚିବାକୁ ହେବ । ନଚେତ ଆକ୍ରମଣ କରିବା ସମ୍ଭବ ନୁହେଁ । ରାତି ଆସିଗଲେ ଏମାନଙ୍କଠାରୁ ଡ୍ରାଗନ ଅଧିକ ଲାଭବାନ ହେବ । କାରଣ ଏହି ଘଞ୍ଚ ଜଙ୍ଗଲ ସହିତ ସେ ବହୁକାଳରୁ ପରିଚିତ । ସର୍ବଦା ସ୍ଥଳଭାଗରେ ଆନନ୍ଦରେ ଜୀବନ ବିତାଇଥିବା ସୈନ୍ୟବାହିନୀ ପକ୍ଷରେ ଏପରି ଏକ ବିପଦଶଙ୍କୁଳ ହିଂସ୍ରଜନ୍ତୁ ଭରା ଜଙ୍ଗଲ ଭିତରେ କୀଟପତଙ୍ଗଙ୍କ ଦଂଶନ ଭିତରେ ରାତ୍ରିରେ ସମୟ କଟିବା ବା ଡ୍ରାଗନର ସମ୍ମୁଖୀନ ହେବା ଯେ କେତେ କଷ୍ଟକର ତାହା ଚିନ୍ତାକରି କ୍ୟାପଟେନ ବ୍ୟସ୍ତ ହୋଇ ପଡୁଥିଲେ ଓ ଶୀଘ୍ର ଆଗେଇବାକୁ ସହକର୍ମୀମାନଙ୍କୁ ପରାମର୍ଶ ଦେଉଥିଲେ ।

ସୂର୍ଯ୍ୟ ଦିଗବଳୟ ଟପି ଘଞ୍ଚ ଜଙ୍ଗଲର ବିରାଟକାୟ ବୃକ୍ଷର ଉଚ୍ଚତାକୁ ସ୍ପର୍ଶ କଲେଣି । ସୂର୍ଯ୍ୟରଶ୍ମି କ୍ରମେ ପ୍ରଖର ହେଲାଣି । କିଛି ଦିନ ତଳେ ସୈନ୍ୟବାହିନୀ ସହିତ ଫେରି ଥିବାରୁ ଅପେକ୍ଷାକୃତ ସଫା ରାସ୍ତାରେ ଆଗେଇଯିବାରେ ବିଶେଷ ଅସୁବିଧା ହେଉ ନଥିଲା । ଆଗରେ ହାଡ଼ ପାହାଡ଼ । ସେଠାରୁ ବାମକୁ କିଛିବାଟ ଗଲେ ହିଂସ୍ର କୁମ୍ଭୀର ପୂର୍ଣ୍ଣ ପୁଷ୍କରିଣୀ ଓ ସେଠାରୁ ଅଧମାଇଲ ଦୂରରେ ନୀଳପର୍ବତର ଉପତ୍ୟକା । ସେତେବେଳଯାଏ ରାକ୍ଷସ ଡ୍ରାଗନର କୌଣସି ପ୍ରକାର ଚିହ୍ନବର୍ଣ୍ଣ ନାହିଁ । ବିଗତ ଗୁଳି ଗୋଳା ମାଡ଼ ଫଳରେ ଏ ଅଞ୍ଚଳର ଜୀବଜନ୍ତୁ ଏକପ୍ରକାର ଭୟପାଇ ଅନ୍ୟଆଡ଼େ ଚାଲିଯାଇଥିବା ପରି ଲାଗୁଥିଲା । ପୂର୍ବେ କ୍ୟାପଟେନ୍ ଦେଖିଥିବା ବହୁ ହିଂସ୍ରଜନ୍ତୁ ଏବେ ତାଙ୍କ ଆଖିରେ ପଡୁନଥିଲେ । ତଥାପି ସାବଧାନତାର ସହ ଆଗେଇଲେ କ୍ୟାପଟେନ ଏବଂ ତାଙ୍କ ଦଳ ।

ସୂର୍ଯ୍ୟଦେବତା ଠିକ୍ ମୁଣ୍ଡ ଉପରକୁ ଆସିଲେଣି । ସମସ୍ତେ ସତର୍କତାର ସହିତ ନୀଳପର୍ବତର ସେହି ଭୟଙ୍କର ଗୁମ୍ଫା ମୁହଁରେ । ସେତେବେଳଯାଏ ବିରାଟକାୟ ପଥରଖଣ୍ଡେ ଗୁମ୍ଫା ମୁହଁକୁ ବନ୍ଦ କରି ରହିଥିଲା ଓ ସେହି ପଥର ପଛରେ ଯେ ବିରାଟକାୟ ଡ୍ରାଗନର ବାସସ୍ଥଳୀ ଗୁମ୍ଫାଟାଏ ରହିଛି ତାର ସ୍ୱରସୂଚକ ଜଣାପଡୁ ନଥିଲା ।

କ୍ୟାପଟେନଙ୍କ ନିର୍ଦ୍ଦେଶରେ ଅତି ସତର୍କତାର ସହ ସମସ୍ତେ ନିଜକୁ ପ୍ରସ୍ତୁତ କରି ନେଲେ । ଜାହାଜର କମ୍ପ୍ୟୁଟର ଇଞ୍ଜିନିୟରଙ୍କ ତତ୍ତ୍ୱାବଧାନରେ ସେହି ସ୍ଥାନକୁ ଘେରି ରହି ୩୦ଟି ଯନ୍ତ୍ର ମାନବଙ୍କୁ ରଖାଗଲା । ଏହି ପ୍ରସ୍ତୁତି ବେଳେ ମଧ୍ୟ କେତେକ ସୈନ୍ୟ ଗୁଳିଗୋଳା ଧରି ପ୍ରସ୍ତୁତ ରହିଲେ । କେତେବେଳେ ଯେ ସେହି କାଳାନ୍ତକ ଜୀବର ଆବିର୍ଭାବ ହେବ ତାହା କିଏ କହିବ ? ମାତ୍ର ସେମାନଙ୍କ ଉପସ୍ଥିତି ବିଷୟରେ ଯେପରି ସେହି ଜୀବ ଜାଣି ନପାରେ ସେଥିପାଇଁ ସମସ୍ତ ପ୍ରସ୍ତୁତି ଅତି ସତର୍କତାର ସହ କରାଯାଉଥିଲା । ଦ୍ୱିତୀୟରେ ଏହି ରାକ୍ଷସଜୀବ ନିଶାଚର ଥିଲା । ରାତ୍ରି ବ୍ୟତୀତ ଦିନରେ ଏହା କ୍ୱଚିତ୍ ପଦାକୁ ବାହାରୁଥିଲା । ତେଣୁ ତାକୁ ଦିନରେ ଯେପରି ହେଲେ ଭୟ କିମ୍ବା ବଳ ପ୍ରୟୋଗ କରି ବାହାରକୁ ଆଣି ଆକ୍ରମଣ କରି ଶେଷ କରିବା ଥିଲା କ୍ୟାପଟେନଙ୍କର ମୂଳ ଲକ୍ଷ୍ୟ । ସୁସଂଗଠିତ ସୈନ୍ୟବାହିନୀ ଯେଝା କାମରେ ଯିଏ ଲାଗିଥିଲେ । ଖୁବ୍ ଶୀଘ୍ର କମାଣ୍ଡରମାନଙ୍କ ନେତୃତ୍ୱରେ ନିଜେ ନିଜର ସ୍ଥାନ ବାଛି ନେଇ ସାରିଥିଲେ । ସମ୍ମୁଖଭାଗରେ ସୈନ୍ୟମାନଙ୍କର ପୋଷାକ ପରିହିତ ଯନ୍ତ୍ରମାନବ ଠିଆ ହୋଇ ମଣିଷର ଅନୁରୂପ ପ୍ରତିକୃତି ସୃଷ୍ଟି କରୁଥିଲେ । ସେମାନଙ୍କ ହାତରେ ଶକ୍ତିଶାଳୀ ଷ୍ଟେନଗନ ଓ ଗୋଳାବାରୁଦ ରହିଥିଲା । ନିର୍ଦ୍ଦେଶ ଅନୁସାରେ ଏହାକୁ ତଳ ଉପର କରି ଚଳାଇବା ପାଇଁ ସେମାନେ ତତ୍ପର । ଘଟଣାସ୍ଥଳର ବହୁ ଦୂରରେ ବସିରହି ଏମାନଙ୍କୁ ଚଳାଇବାର ଦାୟିତ୍ୱ ନେଇ ଥିଲେ ଜଣେ ଦକ୍ଷ ଇଞ୍ଜିନିୟର । ସମସ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ । ସୂର୍ଯ୍ୟ ଦେବତା ନୀଳପର୍ବତ ଆଡ଼କୁ କ୍ରମେ ଢଳିଲେଣି । ଆଉ ସମୟ ନାହିଁ । କୌଣସିମତେ ବର୍ତ୍ତମାନ ଡ୍ରାଗନକୁ ଗୁମ୍ଫା ବାହାରକୁ ଆଣିବାକୁ ହେବ । ମାତ୍ର ଉପାୟ କଣ ! ସେହି ଗୁମ୍ଫା ମୁହଁକୁ ବନ୍ଦକରି ରଖିଥିବା ବିରାଟକାୟ ପ୍ରସ୍ତର ଖଣ୍ଡକୁ ୧୦୦ ଲୋକ ଚାହିଁଲେ ବି ଘୁଞ୍ଚାଇବା କଷ୍ଟ । ସେଥିପାଇଁ ମଧ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇ ସାରିଥିଲା । ଏକ ଶକ୍ତିଶାଳୀ ଡିନାମାଇଟ ଧରି ଆଗେଇଲେ ନିଜେ କ୍ୟାପଟେନ । କାରଣ ସେହି ପଥର ନିକଟକୁ ଯିବା ଅର୍ଥ ନିଜେ ହିଁ ମରଣ ମୁହଁକୁ ଯିବାସହ ସମାନ । ଗତ ଥର ସେହି ସ୍ଥାନରେ ଚାପିହୋଇଥିବା ସୈନ୍ୟକୁ ଡ୍ରାଗନ ହିଁ ଉଠାଇ ନେଇଥିଲା । ଏଣୁ ଏଥର ଯାହାକୁ ପଠାଇଲେ ବି ସେ କୁଣ୍ଠିତ ହେବା ସ୍ୱାଭାବିକ । କ୍ୟାପଟେନ ନିଜର ସାଥୀମାନଙ୍କ ଉପରେ ଏ ପ୍ରକାର ଦାୟିତ୍ୱ ନଦେଇ ନିଜେ ଆଗେଇଲେ ସେହି ଭୟଙ୍କର ଗୁମ୍ଫାର

ଦ୍ୱାରଦେଶକୁ । ମନରେ ତାଙ୍କର ଅସୀମ ସାହସ । ଯଦି ଡ୍ରାଗନ ହଠାତ ବାହାରି ଆସେ ଏବଂ ତାଙ୍କୁ ଧରିନିଏ ତେବେ ସେ ମୃତ୍ୟୁ ବରଣ କଲେ ବି ତାଙ୍କର କୃତିତ୍ୱ ବଢ଼ିବ । ତାଙ୍କର ଏ ପ୍ରକାର ଦୁଃସାହସିକ କାର୍ଯ୍ୟକ୍ରମ ଦେଖି ଡିସୋଜା ତାଙ୍କୁ ଅନୁସରଣ କଲେ । ଯେତେହେଲେ କ୍ୟାପଟେନ ତ ତାଙ୍କୁ ବଞ୍ଚାଇଛନ୍ତି । ଯଦି ସେ ଏପରିଭାବେ ମରିବେ ତେବେ ତାଙ୍କ ପୂର୍ବରୁ ସେ ହିଁ ମରିବା ଆବଶ୍ୟକ । ଧନ୍ୟ କ୍ୟାପଟେନ ଓ ଡିସୋଜା । ଉଭୟ ଯେପରି କର୍ତ୍ତବ୍ୟନିଷ୍ଠାର ଚରମ ପରାକାଷ୍ଠାର ବାର୍ତ୍ତାବହ ଥିଲେ । ଉଭୟଙ୍କୁ ଲକ୍ଷ୍ୟ କରି ଠିଆ ହୋଇଥିଲେ ଶହ ଶହ ସୁସଜ୍ଜିତ ସୈନ୍ୟବାହିନୀ । ଯଦିବା ଡ୍ରାଗନ ହଠାତ୍ ବାହାରି ଆସେ ତେବେ କ୍ୟାପଟେନ୍ ଓ ତାଙ୍କ ସାଥୀଙ୍କୁ ତା' ମୁହଁରେ ସେମାନେ ଦେବାକୁ କେବେହେଲେ ପ୍ରଶ୍ରୟ ଦେବେ ନାହିଁ ।

ଖୁବ୍‌ଶୀଘ୍ର ସେଠାରେ ପହଞ୍ଚିଗଲେ କ୍ୟାପଟେନ । ଗତ କିଛିଦିନ ତଳର ଚାପି ହୋଇ ରହିଥିବା ସୈନିକର ରକ୍ତ ସେତେବେଳଯାଏ ଖଣ୍ଡିଏ ପଥରକୁ ରକ୍ତରଞ୍ଜିତ କରି ନାଲି ରଙ୍ଗରେ ରୂପାୟିତ କରିଥିଲା । କ୍ୟାପଟେନ ସେହି ପଥର ନିକଟରେ ଆଣ୍ଠେଇପଡ଼ି ନିଜର ସମ୍ମାନ ପ୍ରଦର୍ଶନ କଲେ ସେହି ବୀର ସୈନିକର ସ୍ମୃତିରେ । ହାତରେ ଧରିଥିବା ବିରାଟକାୟ ଡିନାମାଇଟକୁ ସେହି ସୁବିସ୍ତୀର୍ଣ୍ଣ ପଥର ଦେହରେ ରଖିଦେଲେ ଅତି ସନ୍ତର୍ପଣ ସହକାରେ କ୍ୟାପଟେନ । ଏବଂ ଏହାର ବିଭିନ୍ନ ଦିଗରେ ବହୁ ଡିନାମାଇଟ ବିଛାଇ ଦେଲେ । ସେତେବେଳଯାଏ କୌଣସି ପ୍ରକାର ଆଶା, ଆଶଙ୍କା ନାହିଁ । ଗୁମ୍ଫା ଭିତରୁ ମଧ କୌଣସି ସ୍ୱରଶବ୍ଦ ନାହିଁ । କାର୍ଯ୍ୟ ଶେଷ କରି ଫେରି ଆସିଲେ କ୍ୟାପଟେନ ଓ ଡିସୋଜା ନିଜ ସ୍ଥାନକୁ ।

ପ୍ରଚଣ୍ଡ ଶବ୍ଦ କରି ଗଗନ ପବନକୁ ଥରାଇ ପଥରକୁ ବିଦୀର୍ଣ୍ଣ ଖଣ୍ଡବିଖଣ୍ଡିତ କରି ଆକାଶକୁ ଉଠାଇ ନେଲା ଶକ୍ତିଶାଳୀ ଡିନାମାଇଟ । ପୂର୍ବରୁ ଏହି ଶାନ୍ତ, ଭୟଙ୍କର ଦ୍ୱୀପରେ ଏତେବଡ଼ ଶବ୍ଦ ବୋଧେ ହୋଇ ନଥିଲା । ରାକ୍ଷସ ଡ୍ରାଗନର ଚିତ୍କାରଠାରୁ ଏହି ଶବ୍ଦ ବହୁ ଗୁଣରେ ବଳି ପଡ଼ିଲା । ଜୀବଜନ୍ତୁ ମାନେ ଯେ ଯେଉଁଠି ଥିଲେ ଚମକି ଉଠିଲେ । କେତେକ ଭୀତତ୍ରସ୍ତ ହୋଇ ଜୋରରେ ଧାଇଁବାକୁ ଲାଗିଲେ । ହାଡ଼ପାହାଡ଼ ସେହି ଭୟଙ୍କର ଶବ୍ଦରେ ଥରି ଉଠିଲା । ନୀଳପର୍ବତର କେତେକାଂଶରୁ ଶହ ଶହ ଛୋଟବଡ଼ ପଥର ଖସିଆସି

ଉପତ୍ୟକାରେ ପଡ଼ିଲା । ନିକଟସ୍ଥ ବହୁ ଗଛ ଦୋହଲି ଉଠିଲେ ଓ ପାଖରେ ଥିବା କେତେକ ଧରାଶାୟୀ ହେଲା । ହାଡ଼ ପାହାଡ଼ ନିକଟସ୍ଥପୋଖରୀରେ କମ୍ପନ ସୃଷ୍ଟି ହୋଇ ବୃହତ୍ ଲହରୀମାଳା ସୃଷ୍ଟି ହେଲା । ଏହା ଭିତରେ ଥିବା କୁମ୍ଭୀର ଓ ଜଳଜୀବ ଜଳ ଉପରକୁ ମୁହଁ କାଢ଼ି ଘଟଣା ବିଷୟରେ ଜାଣିବାକୁ ବୋଧହୁଏ ଜିଜ୍ଞାସା କଲେ । ସତେ ଯେପରି କିଛିକ୍ଷଣ ପାଇଁ ସାରା ଦ୍ୱୀପ ସ୍ତମ୍ଭୀଭୂତ ହୋଇଗଲା । ସମସ୍ତେ ଜଡ଼ ପାଲଟିଗଲେ ।

ମୁହଁରେ ଥିବା ଏହି ପଥରଟି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବା ପରେ ଏକ ବିରାଟକାୟ ଗୁମ୍ଫା ଦେଖାଗଲା । ଏହାର ମୁହଁଟି ପରିଷ୍କାର ଦିଶୁଥିଲେ ମଧ୍ୟ ଭିତରଟି ଘନ ଅନ୍ଧାରରେ ବୁଡ଼ି ରହିଥିଲା । ଗୁମ୍ଫାର ଉଚ୍ଚତା ପ୍ରାୟ ୧୦୦ ଫୁଟ ଥିଲା । ଏହା ଯେ ରାକ୍ଷସ ଡ୍ରାଗନର ବାସସ୍ଥାନ ଏକଥା ଜାଣିବାକୁ କାହାରି ସନ୍ଦେହ ନାହିଁ ।

ସମସ୍ତେ ପ୍ରସ୍ତୁତ । ଏବେ ହୁଏତ ଖୁବ୍ ଶୀଘ୍ର ସେହି ରାକ୍ଷସ ଜୀବ ପଦାକୁ ବାହାରି ଆସିବ । ସମୟ ଆଗତ । ଫଳରେ ସମସ୍ତେ ପ୍ରସ୍ତୁତ ରହିବା ହିଁ ସାର ହେଲା । ଅଧଘଣ୍ଟା ବିତିଯାଇଥିଲେ ମଧ୍ୟ ଡ୍ରାଗନର କୌଣସି ଚିହ୍ନବର୍ଣ୍ଣ ନାହିଁ । ସାହସ କରି ଗୁମ୍ଫା ମୁହଁକୁ ଯିବା ଅର୍ଥ ମୃତ୍ୟୁ ମୁହଁକୁ ଯିବା ।



# ଧୈର୍ଯ୍ୟର ସମାପ୍ତି !

ସାହସର ସହିତ ହାତରେ ଶକ୍ତିଶାଳୀ ଟର୍ଚ୍ଚ ଲାଇଟ୍ ଧରି ଆଗେଇଲେ କ୍ୟାପଟେନ । ତାଙ୍କ ପଛକୁ କିଛି ସୈନ୍ୟ ଘେରି ରହିଲେ । ଯଦିବା ହଠାତ୍ ସେହି ଡ୍ରାଗନ ବାହାରି ଆସି ଆକ୍ରମଣ କରେ ତେବେ ସୈନ୍ୟମାନେ ପ୍ରଚଣ୍ଡଭାବେ ତାକୁ ଆକ୍ରମଣ କରିବା ଠିକ୍ ହେଲା । ଗୁମ୍ଫା ମୁହଁଠାରୁ କୋଡ଼ିଏ ଫୁଟ ଦୂରରେ ରହି କ୍ୟାପଟେନ ଭିତରକୁ ଲକ୍ଷ୍ୟ କରୁଥିଲେ । ବିରାଟକାୟ ପଥରର ଖଣ୍ଡବିଖଣ୍ଡିତ ଅଂଶବିଶେଷ ଗୁମ୍ଫାର ପାଦ ଦେଶର ଗଦା ହୋଇ ରହିଥିଲା । ତାହା ଉପରେ ଠିଆ ହେବା ଅସମ୍ଭବ ଥିଲା । ତଥାପି କଷ୍ଟେମଷ୍ଟେ କ୍ୟାପଟେନ ଠିଆ ହୋଇ ଟର୍ଚ୍ଚ ଆଲୋକ ପକାଇଲେ ଗୁମ୍ଫା ଭିତରକୁ । ମାତ୍ର ଏହି ଆଲୋକ ଗୁମ୍ଫାର କିଛି ବାଟଯାଏ ଆଗେଇଯାଇ ସ୍ଥିର ରହିଲା । ଭିତରକୁ ଘନ ଅନ୍ଧକାର ଭିତରେ କଣ ରହିଛି ଦେଖିବା ଅସମ୍ଭବ ଥିଲା । ମାତ୍ର ଆଲୋକ ପଡ଼ିଥିବା ସ୍ଥାନରେ କିଛି ନଥିଲା । ସମସ୍ତ ଅଞ୍ଚଳରୁ ଏକ ଦୁର୍ଗନ୍ଧ ଭାସି ଆସୁଥିଲା । ବୋଧହୁଏ ଏହି ଗୁମ୍ଫାଭିତରେ ମଧ ରାକ୍ଷସ ଡ୍ରାଗନ କେତେକ ଜନ୍ତୁଙ୍କୁ ମାରି ଖାଉଥିଲା । ଏବଂ ସେମାନଙ୍କ ଶରୀରର ଖଣ୍ଡିତ ଅଂଶବିଶେଷ ଓ ଡ୍ରାଗନ ଶରୀରରୁ ଆସୁଥିବା ଦୁର୍ଗନ୍ଧରୁ ଏପରି ଗନ୍ଧ ଆସୁଥିଲା । କ୍ୟାପଟେନଙ୍କ ଆଗରେ ଆଉ କିଛି କରିବା ନଥିଲା । ସେ ଫେରିଆସିଲେ ହତୋତ୍ସାହିତ ହୋଇ, ତାଙ୍କ ନିର୍ଦ୍ଦେଶରେ କେତେରାଉଣ୍ଡ ଗୁଳି ମଧ ଫାଏର କରାଗଲା ଗୁମ୍ଫା ଭିତରକୁ । ମାତ୍ର ଏହାଦ୍ୱାରା ମଧ କୌଣସି ପ୍ରକାର ଆଶା ଦେଖାଗଲା ନାହିଁ । ଗଭୀର ନିରାଶା ଭିତରେ ଫେରିଲେ କ୍ୟାପଟେନ ।

ସୂର୍ଯ୍ୟତାଙ୍କର କର୍ତ୍ତବ୍ୟ କରିବାରେ ଆଜିଯାଏ କେବେ ହେଳା କରିନାହାନ୍ତି । କ୍ରମେ ନୀଳପର୍ବତର ଚୂଡ଼ାକୁ ଛୁଇଁଲେ ସୂର୍ଯ୍ୟ ଦେବତା ଆଉ କିଛି ସମୟ ମଧରେ ସନ୍ଧ୍ୟା ଆଗତ । ଏହି ଭୟଙ୍କର ଦ୍ୱୀପରେ ବିଭୀଷିକାମୟ ରାତ୍ରିକୁ ସେମାନଙ୍କୁ ସମ୍ମୁଖୀନ ହେବା ବ୍ୟତୀତ ଅନ୍ୟ କିଛି ପନ୍ଥା ନଥିଲା । ଫେରିଯିବାର ସମସ୍ତ ପଥ ବନ୍ଦ । ଥରେ ଫେରିଗଲେ ପୁନର୍ବାର ଏତେ ଜିନିଷପତ୍ର ନେଇ ପୁଣି ଆସିବା ଅସମ୍ଭବ ।

କାଳରାତ୍ରିରେ କିପରି ଭାବେ ଡ୍ରାଗନର ସମ୍ମୁଖୀନ ହେବାକୁ ହେବ ସେ ବିଷୟରେ ଗଭୀର ଭାବେ ଚିନ୍ତା କରୁଥିଲେ କ୍ୟାପଟେନ। ରାତ୍ରିଚର ଏହି ଡ୍ରାଗନ ରାତ୍ରିରେ ଅତ୍ୟଧିକ ପରାକ୍ରମୀ ଓ ହିଂସ୍ରମୁଖୀ ହୋଇଥାଏ। ଆଶୁ ବିପଦର ଆଶଙ୍କାକରି ହୁଏତ ଏହା ତାର ବାସସ୍ଥାନ ଛାଡ଼ି ଅନ୍ୟ କେଉଁଆଡ଼େ ଚାଲିଯାଇଛି। ତା ସହିତ ଆଉ ଦେଖା ହେବ କି ନାହିଁ କିଏ କହିବ। ତେବେ ଏତେ ବଡ଼ ଯୋଜନା କଣ ପଣ୍ଡ ହୋଇଯିବ। ତାଙ୍କ ମୁହଁରେ ହତାଶାର ଚିହ୍ନ ପରିଲକ୍ଷିତ ହେଉଥିଲା। ମାତ୍ର ସେ ଯଦି ହତୋତ୍ସାହିତ ତେବେ, ତେବେ ତାଙ୍କ ସୈନ୍ୟମାନଙ୍କୁ ଓ ସହକର୍ମୀଙ୍କୁ ପ୍ରେରଣା ଦେବ କିଏ ? ତେଣୁ କ୍ୟାପଟେନ ରାତ୍ରିର କାର୍ଯ୍ୟକ୍ରମ ନେଇ ଅନ୍ୟମାନଙ୍କ ସହ ପରାମର୍ଶ କରିଚାଲିଲେ।

ସୂର୍ଯ୍ୟଦେବତା ନୀଳପର୍ବତର ଆରପାଖରେ ଅସ୍ତ ହେଲେ। ଝିଙ୍କାରୀର ଉତ୍କଟ ଶବ୍ଦ ସହିତ କାଳରାତ୍ରି ମାଡ଼ିଆସିଲା ଦ୍ୱୀପ ଉପରକୁ। ସମସ୍ତେ ପ୍ରସ୍ତୁତ ହୋଇ ଅନିଶ୍ଚିତ ଭବିଷ୍ୟତକୁ ଅପେକ୍ଷା କରିବା ବ୍ୟତୀତ ଅନ୍ୟ କିଛି ପନ୍ଥା ନଥିଲା।



# ଶେଷ ରାତ୍ରିର ବିଭୀଷିକା

ଚରମ ଉତ୍କଣ୍ଠା ଭିତରେ ହାତ ଘଣ୍ଟା ଦେଖୁଥିଲେ କ୍ୟାପଟେନ । ଜଙ୍ଗଲ କୀଟପତଙ୍ଗ ଦଂଶନ ଅନେକଙ୍କୁ ଆକ୍ରାନ୍ତ ଓ ଅସ୍ତବ୍ୟସ୍ତ କରି ପକାଉଥିଲା । କାଠ ଗଣ୍ଡି ଉପରେ, କିଏ ବା ଘଞ୍ଚ ପତ୍ରର ଶେଯ ଉପରେ ଆଶ୍ରୟ ନେଇ ଡ୍ରାଗନର ଆଗମନକୁ ଅପେକ୍ଷା କରିଥିଲେ । ମଧ୍ୟରାତ୍ରି ଗତ ପ୍ରାୟ, ଏଯାଏ ଡ୍ରାଗନର ଦେଖା ନାହିଁ କିମ୍ବା ଆସିବାର କୌଣସି ସୁରାକ ବି ନାହିଁ । ଆଗରେ ସୁସଜ୍ଜିତ ସୈନ୍ୟଦଳ ପରି ଜାଗ୍ରତ ପ୍ରହରୀ ସଦୃଶ ଠିଆହୋଇ ରହିଛନ୍ତି ଯନ୍ତ୍ରମାନବ ଦଳ । ସମସ୍ତଙ୍କ ଭିତରେ ହତାଶା । ରାତ୍ରି ପାହିବାକୁ ଆଉ ଦୁଇତିନିଘଣ୍ଟା ବାକୀ । ସୁଶୀତଳ ପବନ ଆଖିରେ ବାଜି କର୍ତ୍ତବ୍ୟନିଷ୍ଠ ସୈନ୍ୟ ଦଳଙ୍କ ଆଖି ମଧ୍ୟ ସେମାନଙ୍କ ଅଜାଣତରେ ବୁଜି ହୋଇ ଆସୁଛି । କେତେକ ନିଦ୍ରାଗତ ।

କ୍ୟାପଟେନ କିନ୍ତୁ ଗୋଟିଏ କଥା ଭୁଲି ଯାଇଥିଲେ । ପ୍ରତ୍ୟେକ ଥର ପାହାନ୍ତିଆ ପ୍ରହରକୁ ଡ୍ରାଗନର ଆବିର୍ଭାବ ଘଟିଥାଏ । ଡିସୋଜାଙ୍କ ସହିତ ମଧ୍ୟ ସେହି ପାହାନ୍ତିଆ ପ୍ରହରର ସାକ୍ଷାତ ଘଟିଥିଲା । ପୂର୍ବ ଥର ମଧ୍ୟ ତାହାହିଁ ଘଟିଥିଲା । ଏ ବିଷୟ କ୍ୟାପଟେନଙ୍କ ଲକ୍ଷ୍ୟରୁ ବିଚ୍ୟୁତ ଘଟିଥିଲା । ଯା' ଫଳରେ ସେ ତାଙ୍କ ସହକର୍ମୀମାନଙ୍କୁ ଏ ଦିଗରେ ସତର୍କ କରାଇ ପାରିନଥିଲେ ।

ହଠାତ୍ କଡ଼ମଡ଼ ଶବ୍ଦରେ କ୍ୟାପଟେନ ମୁହଁ ବୁଲାଇଲେ । ସେତେବେଳକୁ ତାଙ୍କ ଠାରୁ କିଛି ଦୂରରେ ଠିଆ ହୋଇଥିଲା ସେହି ବିରାଟକାୟ ରାକ୍ଷସ । ତା ଆଖିରୁ ଅଗ୍ନି ସ୍ଫୁଲିଙ୍ଗ ନିର୍ଗତ ହେଉଥିଲା । ସେ ଅତ୍ୟଧିକ ଉତ୍ତେଜିତ ଥିବା ପରି ମନେ ହେଉଥିଲା । ସେ ହାତରେ ଉଠାଇ ନେଉଥିଲା ଗୋଟି ଗୋଟି କରି ଯନ୍ତ୍ରମାନବଙ୍କୁ ଏବଂ ରାଗି ଦୁଇ ହାତରେ ଧରି ମୋଡ଼ି ଫିଙ୍ଗି ଦେଉଥିଲା ବହୁ ଦୂରକୁ । କ୍ରମାଗତ ଭାବେ ଭାଙ୍ଗି ଚାଲିଥିଲା ସେହି ମୂକ ଯନ୍ତ୍ରମାନବଙ୍କୁ । ଏବଂ ତାହାର ଆକ୍ରମଣରେ ଯନ୍ତ୍ରମାନବ ଦେହରୁ ସଂଯୋଗକାରୀ ତାର ଛିଡ଼ି ନଷ୍ଟ ଭ୍ରଷ୍ଟ ହୋଇ ଯାଇଥିଲା । କ୍ୟାପଟେନଙ୍କ ବହୁ ଦୂରରେ ଏହି ଯନ୍ତ୍ରମାନବଙ୍କୁ ଚାଳନା

କରିବା କମ୍ପ୍ୟୁଟର ରହିଥିଲା । କ୍ୟାପଟେନ ନିଜକୁ ଧିକ୍କାର କରୁଥିଲେ । ଏତେ ବେଳଯାଏ ଏହି ଯନ୍ତ୍ରମାନବମାନେ ଚଳନକ୍ଷମ ହେଉନାହାନ୍ତି କାହିଁକି ? ସେଠାରେ ଉପସ୍ଥିତ ଚାଳକ କଣ ଏହା ଦେଖିପାରି ନାହାନ୍ତି । ଆଖି ଆଗରେ ଗୋଟାକପରେ ଗୋଟାଏ ଶକ୍ତିଶାଳୀ ଯନ୍ତ୍ରମାନବର ଏ ଦୂର୍ଦ୍ଦଶା ଦେଖି ସେ ଆଉ ସମ୍ଭାଳି ପାରିଲେ ନାହିଁ । ଯଦି ଏଗୁଡ଼ାକ ଯନ୍ତ୍ରମାନବ ନ ହୋଇଥାନ୍ତେ, ତେବେ ଡ୍ରାଗନ୍‌ର ଶକ୍ତିଶାଳୀ ହାତରେ ହୁଏତ ୨୦ଟି ଅମୂଲ୍ୟଜୀବନ ନାଶ ଘଟନ୍ତାଣି । ସେ ଖୁବ୍ ଜୋରରେ ନିଜ ହୁଇସିଲକୁ ବଜାଇଲେ । ତନ୍ଦ୍ରାଗ୍ରସ୍ତ ଚକ୍ଷୁକୁ ସତେଜ କରି ଯନ୍ତ୍ରମାନବର ଚାଳକ ହଠାତ୍ ଚେଇଁ ଉଠିଲେ ଓ ସେମାନଙ୍କ ସହିତ ଚେଇଁ ଉଠିଲେ ସାରା ସୈନ୍ୟ ବାହିନୀ । ମାତ୍ର ଏହି ହୁଇସିଲ ଶବ୍ଦରେ ଯନ୍ତ୍ରମାନବଙ୍କୁ ଛାଡ଼ି ଆଗେଇଲା ସେହି ଦାନବ କ୍ୟାପଟେନଙ୍କ ଆଡ଼କୁ ।

ଏତେବଡ଼ ଯୋଜନା ଆଖିଆଗରେ ଜଣଙ୍କର ଅପରିଣାମ ଦର୍ଶୀତା ଯୋଗୁ ପଣ୍ଡ ହୋଇ ଯାଇଥିବାରୁ କ୍ୟାପଟେନ୍ ରାଗରେ ଲାଲ୍ ଦିଶୁଥିଲେ । ବର୍ତ୍ତମାନ ଉପାୟ ନାହିଁ । ସେମାନଙ୍କୁ ହିଁ ସାମନା କରିବାକୁ ହେବ ସେହି ବିରାଟକାୟ ଦାନବ ସହିତ । ହୁଏତ ବିଜୟ ନଚେତ ମୃତ୍ୟୁ । ଦାନବ କେତେବେଳୁ ଯନ୍ତ୍ରମାନବଙ୍କୁ ଟପି ଆସିଲାଣି । ସେ ସହକର୍ମୀମାନଙ୍କୁ କ୍ରମାଗତ ଶୀଘ୍ର ଗୁଳିବର୍ଷଣ କରିବାକୁ ନିର୍ଦ୍ଦେଶ ଦେଲେ । ତିଷ୍ଠି ରହିଥିବା ୭/୮ ଟି ଯନ୍ତ୍ରମାନବ ସେହିପରି ମୁକଭାବେ ଠିଆ ହୋଇ ରହିବା ବ୍ୟତୀତ ଆଉ କିଛି କରିପାରୁ ନଥିଲେ । ସେମାନଙ୍କୁ ଯୋଗାଯୋଗ କରୁଥିବା ତାର ଡ୍ରାଗନର ଆକ୍ରମଣରେ ପ୍ରାୟ ବିଚ୍ଛିନ୍ନ ହୋଇ ଯାଇଥିଲା ।

ହଠାତ୍ ପାହାନ୍ତାପହରର ନିଶବ୍ଦ ରଜନୀକୁ କୋଳାହଳମୟ କରି ଶତ ଶୃଙ୍ଗର ଶବ୍ଦ ନେଇ ଫୁଟି ଉଠିଲା ବହୁ ଗୋଳାବାରୁଦ ଏକ ସମୟରେ ଡ୍ରାଗନ ଆଡ଼କୁ । ମାତ୍ର ଏହି ଶବ୍ଦଠାରୁ ଡ୍ରାଗନର ଚିତ୍କାର ଅତ୍ୟଧିକ ଉତ୍କଟ ଥିଲା ଓ ଏହା ଶରୀରରେ ଭୟଙ୍କର ଶିହରଣ ସୃଷ୍ଟି କରୁଥିଲା । ଡ୍ରାଗନ ଅସ୍ତବ୍ୟସ୍ତ ହେବାପରି ଜଣା ପଡୁଥିଲା । ଚାରି ଦିଗରୁ ଶହ ଶହ ଗୁଳି ତାର ଶରୀରରେ ପଡ଼ି ଝଡ଼ିପଡୁଥିଲା ମାତ୍ର ଅନେକ ଗୁଳି ତାର ମସ୍ତିଷ୍କ, ଚକ୍ଷୁ ଓ ମୁଖମଣ୍ଡଳରେ ମାଡ଼ ହେଉଥିଲା । ସେ ଭୟଙ୍କର ଆର୍ତ୍ତଚିତ୍କାର କରୁଥିଲା । ଡ୍ରାଗନ ସେ ଅଞ୍ଚଳକୁ ଏକ ଶ୍ମଶାନରେ

ପରିଣତ କରି ଦେଇଥିଲା । ତାର ଆକ୍ରମଣରେ ବହୁ ଶକ୍ତିଶାଳୀ ଗଛ ଧରାଶାୟୀ ହୋଇଥିଲା । କ୍ୟାପଟେନଙ୍କ ନିର୍ଦ୍ଦେଶରେ ସୈନ୍ୟବାହିନୀ ତାକୁ ଗୁଳି ବର୍ଷଣ କରିବା ସହିତ ପଛକୁ ଚାଲିଥିଲେ । କାରଣ ଆହତ ହେବା ପରେ ଡ୍ରାଗନର ଆକ୍ରମଣ, ଚିତ୍କାର ଓ ଧସ୍ତାଧସ୍ତି ଦ୍ୱାରା ଅନେକ ତା ପାଦତଳେ ଯେ ପ୍ରାଣ ବିସର୍ଜନ ନକରିବେ ତାହା କିଏ କହିବ ?

ବିକଟାଳ ଚିତ୍କାର କରି ଫେରୁଥିଲା ଡ୍ରାଗନ । ଆଗେଇବା ପାଇଁ ତା' ନିକଟରେ ଆଉ ବାଟ ନଥିଲା । ଶହ ଶହ ମାରାତ୍ମକ ଗୁଳି ପ୍ରତିସେକେଣ୍ଡରେ ତା'ର ମସ୍ତିଷ୍କ ଭେଦ କରୁଥିଲା । ଫେରିଲା ବାଟରେ ସୈନିକପରି ଠିଆ ହୋଇଥିବା ଦୁଇଟା ଯନ୍ତ୍ରମାନବଙ୍କୁ ଉଠାଇନେଲା ସେହି ଦାନବ । ତା' ମୁଖରେ ଆନନ୍ଦର ଚିହ୍ନ । ସେ ଯେପରି ପରାଜୟ ବରଣ କରି ମଧ ବିଜୟୀ ।

ଅତି ରାଗରେ ସେ ଗୋଟିଏ ଯନ୍ତ୍ରମାନବକୁ ଦୁଇ ହାତରେ ଚିପି ଧରି ତା ପାଟି ଭିତରକୁ ପୂରାଇଲା । ତା'ର ବିରାଟ ପାଟି ଭିତରେ ପଶିବା ମାତ୍ରେ ଏହା ଦାନ୍ତ କଡ଼ମଡ଼କରି ରାଗରେ ତାକୁ ପାଟି ଭିତରେ ଚିପି ଦେଲା । ମାତ୍ର ପରମୁହୂର୍ତ୍ତରେ ଏକ ବିକଟାଳ ଶବ୍ଦ ସାରା ଜଙ୍ଗଲ ଭୂମିକୁ ଥରାଇ ଦେଲା । ସତେ ଯେପରି ନୀଳ ପର୍ବତ ଭାଙ୍ଗିପଡ଼ିଲା । ଡ଼ିନାମାଇଟ୍ ଓ ବୋମାର ପ୍ରଚଣ୍ଡ ବିସ୍ଫୋରଣରେ ସେ ଅଞ୍ଚଳ ଧୂଆଁଳିଆ ହୋଇ ସାରିଥିଲା । ସେହି ଯନ୍ତ୍ରମାନବ ଭିତରେ ଯେ ଶକ୍ତିଶାଳୀ ବୋମା ଓ ଡିନାମାଇଟ ରହିଥିଲା ଏହା କ୍ୟାପଟେନ ଜାଣି ଏଥର ଡ୍ରାଗନର ମୃତ୍ୟୁନିଶ୍ଚିତ ହୋଇଛି ବୋଲି ଆଶା କରି ନେଇଥିଲେ । ମାତ୍ର ବୋମାମାଡ଼ ଜନିତ ବହଳିଆ ଧୂଆଁ ଭିତରୁ କଣ ସେଠାରେ ଘଟିଲା ଜାଣିବା ଅସମ୍ଭବ ଥିଲା । ସୈନ୍ୟ ବାହିନୀ ଆଶ୍ୱସ୍ତ ହେଲେ । କ୍ୟାପଟେନ ମଧ ଭାବୁଥିଲେ ପୂର୍ବଥର ଦେଖିଥିବା ଡ୍ରାଗନର ଚକ୍ଷୁ ଆକ୍ରାନ୍ତ ହୋଇଥିଲା ଓ ବହୁ ଗୁଳି ତାର ମସ୍ତିଷ୍କ ଭେଦ କରିଥିଲା । ପୂର୍ବ ଡ୍ରାଗନ ତୁଳନାରେ ଏହାର ଉଚ୍ଚତା ଟିକେ କମ ଥିଲା । ଏହିପରି ତୁଳନା କରିବା ଭିତରେ କ୍ରମେ ଫର୍ଚ୍ଚା ହୋଇ ଆସୁଥିଲା । ଗୁଳିଗୁଳା ନାଦରେ ମୁଖରିତ ଜଙ୍ଗଲ ଭିତରେ ସେଦିନ ରାତ୍ରି ପାହିଲେ ମଧ କୌଣସି ପକ୍ଷୀଙ୍କ କାକଳୀ ଶୁଭୁନଥିଲା । ସମସ୍ତେ ଯେପରି ଭୀତତ୍ରସ୍ତ ହୋଇ ସେ ଅଞ୍ଚଳଛାଡ଼ି ପଳାୟନ କରୁଥିଲେ ।

ଦିନର ଆଗମନ ସହିତ ସମସ୍ତେ ଆନନ୍ଦିତ ହୋଇ ଉଠୁଥିଲେ । ମାତ୍ର ପାହାନ୍ତିଆର ଝାପସା ଆଲୋକରେ କ୍ୟାପଟେନ ହଠାତ୍ କିଛି ଦେଖି ଚମକି ଉଠିଥିଲେ । ଏ କଣ ? ଗୁମ୍ଫା ମୁହଁରୁ ଗତକାଲି ରାତ୍ରିରେ ଡିନାମାଇଟ ଦ୍ୱାରା ଖଣ୍ଡବିଖଣ୍ଡିତ କରିଦେଇଥିବା ବିରାଟକାୟ କଳା ପଥର ପୁଣି ସେଠାରେ ପଡ଼ିରହିଥିଲା । ସେ ଏହାର କାରଣ ତର୍ଜମା କରିବା ବେଳେ ଡିସୋଜା ଆନନ୍ଦରେ ନାଚିଉଠି କ୍ୟାପଟେନଙ୍କୁ ସାଧୁବାଦ ଦେଉ ଦେଉ କହୁଥିଲେ, କ୍ୟାପଟେନ ! ଏହା କଳା ପଥର ନୁହେଁ, ସେହି ବିରାଟ ରାକ୍ଷସ ଡ୍ରାଗନର ମୃତ ଦେହ । କ୍ୟାପଟେନ ମଧ୍ୟ ଆନନ୍ଦରେ ଅଧୀର ହୋଇ ଉଠିଥିଲେ । ସତର୍କତାର ସହିତ ସମସ୍ତେ ଆଗେଇ ଯାଇଥିଲେ ସେହି ଡ୍ରାଗନର ପର୍ବତପ୍ରାୟ ପଡ଼ିଥିବା ଶରୀର ନିକଟକୁ । କୌଣସି ପ୍ରାଣୀର ଶରୀର ଯେ ଏତେ ବଡ଼ ହୋଇପାରେ ଏହା ଦେଖିବା ସମସ୍ତଙ୍କ ପାଇଁ ପ୍ରଥମ ଘଟଣା ହୋଇଥିଲା । ବୋମା ମାଡ଼ରେ ଡ୍ରାଗନର ମୁଖମଣ୍ଡଳ ଛିନଛତ୍ର ହୋଇ ଏଣେତେଣେ ପଡ଼ିଥିଲା । ଗଣ୍ଡିଠାରୁ ମୁଣ୍ଡଟି ଅଲଗା ହୋଇ ସେଠାରୁ ଏକ ରକ୍ତନଦୀ ବୋହିଯାଉଥିଲା । ଏହି ରକ୍ତନଦୀ ଯାଇ ନୀଳପର୍ବତରୁ ବୋହି ଆସୁଥିବା ଝରଣା ଦେହରେ ମିଶି ଏହାର ଜଳକୁ ନାଲ କରି ଦେଇଥିଲା । ଆନନ୍ଦରେ ଅଧୀର ହୋଇ ନାଚୁଥିଲେ ସୈନ୍ୟଦଳ ।

ମାତ୍ର କ୍ୟାପଟେନ ସମସ୍ତଙ୍କୁ ହୁଇସିଲ ମାରି ସତର୍କ କରି ଦେଇଥିଲେ । ସେ କହୁଥିଲେ ବର୍ତ୍ତମାନ ସୁଦ୍ଧା ଆମ ଆଗରୁ ବିପଦ ଯାଇ ନାହିଁ । ପ୍ରଥମ ଦିନର ଆହତ ଡ୍ରାଗନକୁ ଖୋଜି ବାହାର ନକରିବା ଯାଏ ସବୁବେଳେ ଆମ ଉପରେ ବିପଦ ରହିଛି । ବର୍ତ୍ତମାନ ଚା ଖାଇବାପରେ ସେହି ଡ୍ରାଗନକୁ ଖୋଜିବା କାମ ହିଁ ଆରମ୍ଭ ହେବ । ଏହି ଦୁଇଟି ଡ୍ରାଗନ ବ୍ୟତୀତ ଅନ୍ୟ ବହୁ ଡ୍ରାଗନ ଯେ ଏହି ଦ୍ୱୀପରେ ନଥିବେ ତାହା କିଏ କହିବ ? ସେହି ଆହତ ଡ୍ରାଗନକୁ ଖୋଜିବା ପରେ ଆହତ ଯୁବକର ସନ୍ଧାନ ନେବାକୁ ହେବ ବୋଲି କ୍ୟାପଟେନ ନିର୍ଦ୍ଦେଶ ଦେଇଥିଲେ ।



# ଶେଷରେ ବିଜୟ

ସମସ୍ତଙ୍କ ମନରେ ସନ୍ତୋଷର ଚିହ୍ନ । ସେମାନେ ସଫଳତା ହାସଲ କରିପାରିଥିବାରୁ ଅନେକ ଆନନ୍ଦମତ୍ତ ଥିଲେ । ମାତ୍ର ଆଗରେ ନୀଳପର୍ବତ । ସେହି ଆହତ ଡ୍ରାଗନ କେଉଁଠି ଥାଇପାରେ ତାହା କିପରି ଜାଣିବା ସମ୍ଭବ ହେବ ? ଆହତ ଅବସ୍ଥାରେ ତ ଏହି ଜୀବ କେବେହେଲେ ପର୍ବତ ଉପରକୁ ଚଢ଼ି ଯାଇପାରିନଥିବ । ଏହି ବିଷୟରେ ଗଭୀର ଭାବେ ଆଲୋଚନାରତ ଥିଲେ କ୍ୟାପଟେନ, କମାଣ୍ଡର ବୃନ୍ଦ ଓ ଡିସୋଜା । ଶେଷରେ ସେହି ବିରାଟକାୟ ଗୁମ୍ଫା ଭିତର ଅନୁସନ୍ଧାନ କରିବାକୁ ସ୍ଥିର କଲେ କ୍ୟାପଟେନ । ତାଙ୍କର ମତକୁ ସମସ୍ତେ ସ୍ୱାଗତ କଲେ । ମାତ୍ର ଏହି ଅନ୍ଧକାରମୟ ବିଭୀଷିକା ଘେରା ଗୁମ୍ଫା ଭିତରକୁ ଯିବ କିଏ ?

କ୍ୟାପଟେନ ମତ ଦେଲେ ଯେ ଏହା ଭିତରକୁ ଯିବା ଅପେକ୍ଷା ଏହି ବିରାଟକାୟ ଗୁମ୍ଫାର ଉପର ଛାତକୁ ଡିନାମାଇଟ ଦେଇ ଉଡ଼ାଇ ଦେଇ ପାରିଲେ ଏହା ଭିତରର ରହସ୍ୟ ନିଶ୍ଚିତ ଭାବେ ଉନ୍ମୋଚିତ ହୋଇ ପାରିବ । ତାହା ହିଁ କରାଗଲା । କାରଣ ଏତେବେଳଯାଏ କ୍ୟାପଟେନଙ୍କ ନିର୍ଦ୍ଦେଶମାନି ସମସ୍ତେ ପରିଚାଳିତ ହେଉଥିଲେ ଏବଂ ସଫଳତା ହାସଲ କରିଥିଲେ । ବିରାଟକାୟ ଗୁମ୍ଫାର ଉପର ଅଂଶକୁ ବହୁ କଷ୍ଟରେ ଚଢ଼ି କେତେଜଣ ସୈନିକ ଶକ୍ତିଶାଳୀ ଡିନାମାଇଟ ବାନ୍ଧିଲେ ।

କ୍ୟାପଟେନଙ୍କ ନିର୍ଦ୍ଦେଶରେ ଏଥିରେ ଅଗ୍ନି ସଂଯୋଗ ହେଲା ଏବଂ ପୁଣି ବଣଭୂମିକୁ ଥରାଇ ଏକ ବିରାଟକାୟ ଅଞ୍ଚଳର ପଥର ଓ ପର୍ବତ ଶ୍ରେଣୀ ତଳକୁ ଖସିଲା । ଗୁମ୍ଫା ଭିତର ଆଲୋକିତ ହେଲା ଏବଂ ଏହି ବିପଦଶଙ୍କୁଳ ଗୁମ୍ଫାର ଆଭ୍ୟନ୍ତରୀଣ ଅଞ୍ଚଳରେ ପ୍ରଥମ ସୂର୍ଯ୍ୟରଶ୍ମୀ ପତିତ ହେଲା । ଏହାର ଲମ୍ବା ପ୍ରାୟ ୩୦୦ ଫୁଟ ଯାଏ ହୋଇଥିଲା ଏବଂ ଜଣାପଡୁ ଥିଲା ସତେ ଯେପରି ଏହା କାହାଦ୍ୱାରା ନିର୍ମିତ ହୋଇଛି । ବୋଧହୁଏ ସେହି ରାକ୍ଷସ ଡ୍ରାଗନ୍ ହେବାକୁ ନିର୍ମାଣ

କରିଥିଲା । ଗୁମ୍ଫାର ଶେଷ ଭାଗରେ ସେହି ବିରାଟ ଡ୍ରାଗନର ଶରୀର ପଡ଼ିରହିଥିଲା । ଏହା କେତେ ବେଳୁ ନିସ୍ତେଜ ହୋଇ ଯାଇଥିଲା । କ୍ୟାପଟେନଙ୍କ ନିର୍ଦ୍ଦେଶରେ ବହୁତ ସତର୍କତାର ସହିତ ଆଗେଇଲେ ସୈନ୍ୟ ବାହିନୀ ସେ କାଳାନ୍ତକ ଗୁମ୍ଫା ଭିତରକୁ । ବହୁ ବିଷାକ୍ତ କୀଟ ପତଙ୍ଗଙ୍କର ଏହା ଆସ୍ଥାସ୍ଥଳୀ ଥିଲା । କିନ୍ତୁ ଡ୍ରାଗନ ଭୟରେ ଏହା ଭିତରେ ବାଦୁଡ଼ି, ସର୍ପ ଇତ୍ୟାଦି ଜନ୍ତୁ ପ୍ରବେଶ କରୁନଥିଲେ ।

ସେହି ରାକ୍ଷସ ଡ୍ରାଗନର ଯେ ମୃତ୍ୟୁ ଘଟିଛି ଏହା କ୍ୟାପଟେନ ଅନୁମାନ କରିନେଲେ । ମାତ୍ର ସଠିକ୍ ତଥ୍ୟ ନପାଇବା ଯାଏ ଏହା ନିକଟକୁ ଯିବା ବୁଦ୍ଧିମତାର କାର୍ଯ୍ୟ ନୁହେଁ । କେତେକ ସୈନିକ ଗୋଳା ନିକ୍ଷେପ କଲେ ଡ୍ରାଗନ ନିକଟକୁ ମାତ୍ର କୌଣସି ପ୍ରତିକ୍ରିୟା ନାହିଁ । କ୍ୟାପଟେନ ଚିନ୍ତା କରୁଥିଲେ ଏହି ଡ୍ରାଗନ ଦମ୍ପତିଙ୍କ ମଧ୍ୟରୁ ଜଣକର ମୃତ୍ୟୁ ଦେଖି ଅନ୍ୟଜଣକ ଗଭୀର କଷ୍ଟ ପାଇଛି ଏବଂ ପ୍ରତିହିଂସା ପରାୟଣ ହୋଇ ପଦାକୁ ବାହାରି ଆସି ଅନ୍ୟ ସ୍ଥାନରେ ଲୁଚିରହି ପ୍ରତିଶୋଧ ନେବାକୁ ଅପେକ୍ଷା କରିଛି ।

ମାତ୍ର ଏପରି ଅସହ୍ୟ ଭାବେ ଏହି ରାକ୍ଷସ, ହିଂସ୍ର ଡ୍ରାଗନର ଯେ ମୃତ୍ୟୁ ଘଟିବ ଏହା ତାଙ୍କର ରୂପଦର୍ଶନ କରି କେହି କଣ କେବେ କଳ୍ପନା କରିପାରିବ ?

ଗୁମ୍ଫାଟିକୁ ତନ୍ନ ତନ୍ନ କରି ସେମାନଙ୍କର ଶେଷ ପ୍ରଚେଷ୍ଟା ସ୍ୱରୂପ ସେହି ଆହତ ଯୁବକକୁ ଖୋଜିବାକୁ ନିର୍ଦ୍ଦେଶ ଦେଲେ କ୍ୟାପଟେନ । ଡିନାମାଇଟ ଦ୍ୱାରା ଭାଙ୍ଗି ପଡ଼ିଥିବା ପଥରକୁ ସଫା କରି ଅତି ସନ୍ତର୍ପଣରେ ଆଗେଇ ଆସୁଥିଲେ ସେନା ଦଳ । ଦୁଇଟି ଛୋଟ ପାହାଡ଼ ପରି ଆଗରେ ଓ ପଛରେ ପଡ଼ିଥିଲା ଦୁଇଟି ଡ୍ରାଗନର ବିଶାଳ ଜଡ଼ ଶରୀର । ହଠାତ୍ ଚିତ୍କାର କରି ଉଠିଲେ କେତେକ । ଏ କ'ଣ ? କେତୋଟି ନରମୁଣ୍ଡର ଖପୁରୀ ଓ କଙ୍କାଳ ସବୁ ପଡ଼ିଥିଲା ଗୁମ୍ଫାର ଗୋଟିଏ କୋଣରେ । କ୍ୟାପଟେନ ତତ୍କ୍ଷଣାତ ଯାଇ ସେଠାରେ ପହଞ୍ଚି ଥିଲେ । ସେହି ହତ୍ୟଭାଗ୍ୟ ଯୁବକର ପୋଷାକ ଓ ସଦ୍ୟ କଙ୍କାଳ ଦେଖି ହଠାତ୍ କ୍ରନ୍ଦନ କରି ଉଠିଲେ ଡିସୋଜା । ସେହି ହତଭାଗ୍ୟ ଯୁବକର ଶେଷ ପରିଣତି ତେବେ ଏହାହିଁ ହେଲା । କେତେ କଷ୍ଟକର ନିଜ ଜୀବନକୁ ବିପନ୍ନ କରି ସେ ସେହି ଯୁବକକୁ ବଞ୍ଚାଇ ରଖିଥିଲେ । ମାତ୍ର ହାୟ ! ବିଧିର ବିଧାନ ଯାହା ତାକୁ କିଏ

ଏଡ଼ାଇ ପାରିବ ? ତାଙ୍କୁ ପ୍ରବୋଧନ ଦେଉଥିଲେ କ୍ୟାପ୍‌ଟେନ୍ । ନିଜ ଆଖି ଆଗରେ ପ୍ରାଣପ୍ରୀୟା ପତ୍ନୀ ଓ ଶିଶୁପୁତ୍ରଙ୍କୁ ସାର୍କ ମୁହଁରେ ଶୀକାର ବନି ଅସହାୟ ଭାବେ ମରିଥିବାର ଦୃଶ୍ୟ ଦେଖିଥିବା ଏହି ହତଭାଗ୍ୟ ଯୁବକ ବଞ୍ଚି ରହିଥିଲେ କଣ ଅଧିକ ଆନନ୍ଦରେ ରହିପାରିଥାନ୍ତେ। ତା ବ୍ୟତୀତ ସେ ଗଭୀର କ୍ଷତରେ ଅକ୍ରାନ୍ତ ଥିଲେ। ମୃତ୍ୟୁ ତାଙ୍କର ଅବସମ୍ଭାବୀ ଥିଲା। ସେହି ଖପୁରୀ ନିକଟରେ ଦଣ୍ଡାୟମାନ ହୋଇ ସମସ୍ତେ ମଥାନତ କରି ସେହି ଯୁବକର ସ୍ମୃତିପ୍ରତି ସମ୍ମାନ ପ୍ରଦର୍ଶନ କରି ବନ୍ଧୁକ ଚାଳନା କରିଥିଲେ।

ମାତ୍ର ହଠାତ୍ ଆଶ୍ଚର୍ଯ୍ୟାନ୍ୱିତ ହେଲେ କ୍ୟାପଟେନ। ମାତ୍ର ଦୁଇ ଜଣଙ୍କୁ ଡ୍ରାଗନ ନିକଟ ଭବିଷ୍ୟତରେ ମାରି ଖାଇଥିବା ବେଳେ ୫/୬ଟି ମଣିଷର କଙ୍କାଳ ଓ ଖପୁରୀ ଆସିଲା କେଉଁଠୁ ?

ଅନେକ ଦିନ ତଳର କଥା କ୍ୟାପଟେନଙ୍କ ସ୍ମୃତିପଟରେ ଭାସି ଉଠିଥିଲା। ସେତେବେଳେ ପୃଥିବୀର ବହୁ ସମ୍ବାଦପତ୍ରରେ ପ୍ରକାଶ ପାଇ ଥିଲା ଯେ ଫିଲପାଇନସ୍‌ର କେଉଁ ଏକ ଦ୍ୱୀପାଞ୍ଚଳକୁ ସର୍ଭେ କାମ କରିବାକୁ ଯାଇଥିବା ବହୁ କର୍ମଚାରୀଙ୍କର ପତ୍ତା ମିଳୁନଥିଲା। ସେ ଦ୍ୱୀପକୁ ଥରେ ଯିଏ ଯାଉଥିଲା ସେ ଉଭାନ ହୋଇଯାଉଥିଲା। ଏବଂ ତାର ପତ୍ତା ସଂଗ୍ରହ କରିବା କାହା ପକ୍ଷେ ସମ୍ଭବପର ହେଉନଥିଲା। ତେଣୁ ଅଧାରୁ ଏହି ଦ୍ୱୀପର ସର୍ଭେ କାମ ବନ୍ଦ ହୋଇଯାଇଥିଲା। ସେମାନଙ୍କ ଅନ୍ତର୍ଧାନ ମୂଳରେ ତେବେ ଏହି ଡ୍ରାଗନର କାମ। ଏହି ତଥ୍ୟ ମଧ କ୍ୟାପଟେନଙ୍କ ପାଇଁ ଅନ୍ୟ ଏକ ନୂତନ ତଥ୍ୟ ଥିଲା।

କ୍ୟାପଟେନ ଆଜି ଖୁବ ଖୁସି। ଗୋଟିଏ କାମର ସନ୍ଧାନରେ ଆସି ଆଜି ୩ଟି ଅସାଧ ତଥ୍ୟ ଆବିଷ୍କାର କରିପାରିଛନ୍ତି। ଦୁର୍ଘଟଣାଗ୍ରସ୍ତ ଜାହାଜର ଦୁର୍ଘଟଣାକୁ ଅଙ୍ଗେ ଲିଭାଇଥିବା ଡିସୋଜାଙ୍କୁ ପାଇବା ସହିତ ଅତୀତରେ ମଣିଷମାନଙ୍କୁ ହରଣଚାଳ କରି ନେଉଥିବା ଓ ମାରି ଖାଉଥିବା ଏହି ଅଜବ ଦ୍ୱୀପର ନୂତନ ରାକ୍ଷସ ଜନ୍ତୁ ବିଷୟରେ ତଥ୍ୟ ତଥା ପୂର୍ବେ ମଣିଷଙ୍କ ଅର୍ନ୍ତଧାନ ହୋଇଯାଉଥିବାର କାରଣ ଆଜି ପାଇପାରିଛନ୍ତି। କ୍ୟାପଟେନଙ୍କ ନିର୍ଦ୍ଦେଶରେ ସେହି ବିରାଟକାୟ ଜନ୍ତୁର ଶରୀରକୁ ପଚିବାରୁ ରକ୍ଷା କରିବାକୁ ଇଂଜେକସନ ଦିଆଗଲା ଏବଂ ଏହାକୁ

କୌଣସି ମତେ ନିଆଯାଇ ବିଶ୍ୱବାସୀଙ୍କୁ ଏହି ରାକ୍ଷସ ଜୀବଙ୍କ ସହିତ ପରିଚିତ କରାଇବାକୁ ଚେଷ୍ଟା କରାଯିବାକୁ ନିଷ୍ପତ୍ତି ନିଆଗଲା ।

ଗଭୀର ଆତ୍ମସନ୍ତୋଷରେ ସେଦିନ ଫେରୁଥିଲେ କ୍ୟାପଟେନ ଏବଂ ତାଙ୍କ ଦଳର କର୍ମକର୍ତ୍ତା ବୃନ୍ଦ ।

ଦୂରରେ ସେମାନଙ୍କୁ ଅପେକ୍ଷା କରି ରହିଥିଲା ବିରାଟ ଜାହାଜ ଭିକ୍ଟୋରିଆ । ଜାହାଜ ଉପରକୁ ଉଠୁ ଉଠୁ କ୍ୟାପଟେନ ଓ ତାଙ୍କ ଦଳର ସମସ୍ତେ ସେହି ଭୟଙ୍କର ଦ୍ୱୀପ ଆଡ଼କୁ ଚାହିଁଲେ । ଏହାର ଶ୍ୟାମଳିମା ତାଙ୍କୁ ମୋହିତ କଲା । ଏହାର ସାହସୀ ଅଧିବାସୀମାନଙ୍କୁ ପ୍ରଶଂସା କରୁଥିବା ବେଳେ ଏମ.ଭି. ଭିକ୍ଟୋରିଆ ଲଙ୍ଗର ଉଠାଇ ପଶ୍ଚିମାଭିମୁଖୀ ହୋଇ ମାନିଲା ଆଡ଼େ ଆଗେଇଲା ।



# ପ୍ରତ୍ୟାବର୍ତ୍ତନ

ଟେଲିଫୋନ ଯୋଗେ ସେମାନଙ୍କର ବିଜୟବାର୍ତ୍ତା ସମସ୍ତ ବିଶ୍ୱବାସୀଙ୍କୁ ଜଣାଇଦେଇଥିଲେ କ୍ୟାପଟେନ । ସେମାନଙ୍କୁ ସ୍ୱାଗତ କରିବାକୁ ଚାଲିଥିଲା ସାରା ବିଶ୍ୱରେ ସଜବାଜ । ନୀଳ ସାଗରର ଢେଉକାଟି ଚାଲିଥିଲା ଭିକ୍ଟୋରିଆ ସ୍ଥଳ ଭାଗ ଆଡ଼େ । ଫିଲିପାଇନ୍ସର ଏକ ସହରର ମିଞ୍ଜି ମିଞ୍ଜି ଆଲୋକ ଉଦ୍ଭାସିତ ହେଲାଣି ଚକ୍ଷୁ ଆଗରେ । ସମସ୍ତେ ଆନନ୍ଦ ଉଲ୍ଲାସ ଭିତରେ ମତ୍ତ । ପ୍ରଥମତଃ ସେମାନେ ଏତେବଡ଼ ଦୁର୍ଘଟଣାର ମୂକସାକ୍ଷୀ ଡିସୋଜାଙ୍କୁ ଉଦ୍ଧାର କରିପାରିଛନ୍ତି, ଏହା ସହିତ ଏତେଦିନ ଧରି ବିଶ୍ୱବାସୀଙ୍କର ଚକ୍ଷୁ ଆଢୁଆଳରେ ରହିଥିବା ଏକ ବିପଦଶଙ୍କୁଳ ଦ୍ୱୀପ ତଥା ଏକ ରାକ୍ଷସଜନ୍ତୁ ବିଷୟରେ ତଥ୍ୟ ସଂଗ୍ରହ କରିପାରିଛନ୍ତି । କ୍ୟାପଟେନ ସେହି ଭୟଙ୍କର ରାକ୍ଷସ ଜନ୍ତୁର ବହୁ ଫଟୋ ଉଠାଇ ଆଣିଥିଲେ । ସେମାନଙ୍କର ସାହସିକ ଜଳଯାତ୍ରାର କାହାଣୀ ସାରାବିଶ୍ୱର କୋଟି କୋଟି ଲୋକ ଜାଣିସାରିଥିଲେ ।

ଜାହାଜ ଉପକୂଳବର୍ତ୍ତୀ ବନ୍ଦରରେ ଲଙ୍ଗର ପକାଇଲା । ହଜାର ହଜାର ଲୋକଙ୍କ ହର୍ଷୋତ୍ସବ ମଧ୍ୟରେ ଜାହାଜରୁ ଓହ୍ଲାଇଲେ କ୍ରମାନ୍ୱୟରେ କ୍ୟାପଟେନ୍, ଡିସୋଜା, ରର୍ବଟ୍ ସ୍ମର୍ଟ ଓ ଅନ୍ୟ କର୍ମଚାରୀଗଣ । ସେମାନଙ୍କୁ ବୀର ପରି ସମ୍ମାନିତ କରାଗଲା । ଶହ ଶହ ଦେଶ ବିଦେଶର ସାମ୍ବାଦିକ ସେମାନଙ୍କୁ ଘେରି ଯାଇ ବହୁ ପ୍ରଶ୍ନ ପଚାରି ଚାଲିଥିଲେ । ଏ ପ୍ରକାର ଭୟଙ୍କର ଜନ୍ତୁକୁ ପୂର୍ବରୁ କେହି ଦେଖିନଥିଲେ କିମ୍ବା ଏହା ବିଷୟରେ ଜାଣିନଥିଲେ । ପରଦିନ ବିଶ୍ୱବାସୀଙ୍କୁ ଚକିତ କରି ବହୁ ଫଟୋଚିତ୍ର ସହ ବିଶ୍ୱର ସବୁ ବଡ଼ ବଡ଼ ସମ୍ବାଦପତ୍ରରେ ଖବର ପ୍ରକାଶ ପାଇଲା । ବିଶ୍ୱବାସୀ କ୍ୟାପଟେନ ଓ ଡିସୋଜାଙ୍କ ଦୁଃସାହସିକ ଜଳଯାତ୍ରାର କାହାଣୀ ଶୁଣି ସ୍ତବ୍ଧ ହୋଇଗଲେ ଓ ସେମାନଙ୍କୁ ପ୍ରଶଂସା କଲେ ।

